# ଭୂମିକା ।

ଗ୍ରହବିପ୍ର ଯେ ବିଶୁଦ୍ଧ ବ୍ରାହ୍ମଣ ଏସମ୍ବନ୍ଧରେ ବିଶେଷ ପ୍ରମାଣ ହୁଅନ୍ତି । କିନ୍ତୁ ଏମାନେ ସ୍ୱବଂଶ ବ୍ରାହ୍ମଣଙ୍କଠାରୁ ପୃଥକ୍ ଏବଂ ଦାଂଶ ବ୍ରାହ୍ମଣ ବୋଲି ପରିଚିତ । ଅସ୍ମରଣୀୟ କାଳରୁ ର୍ଥିଭର ଗୃହରେ ପୁରୋହିତ ବ୍ରାହ୍ମଣ ଓ ଗ୍ରହବିପ୍ର ଏକତ୍ରରେ ଶୁଭ କାର୍ଯ୍ୟ ସମ୍ପନ୍ନ କରି ଆସୁଅଛନ୍ତି । ବିଶେଷତଃ ବେଦାଙ୍ଗ ଜ୍ୟୋତିଃବିଦ୍ୟାରେ ପାଣ୍ଡିତ୍ୟ ଥିବାରୁ ଜନସାଧାରଣ ପ୍ରତ୍ୟେକ ର୍ଯ୍ୟରେ ଗ୍ରହବିପ୍ରଙ୍କର ପରାମର୍ଶ ଗ୍ରହଣକରି ଆସୁଅଛନ୍ତି ଏବଂ ଯଜନ ାଜନାଦି ବ୍ରାହ୍ମଣୋଚିତ କର୍ମ ଗ୍ରହବିପ୍ରଙ୍କର ଜାତିଗତ ଅଧିକା, ତେଣୁ ପ୍ରସିଦ୍ଧ ସ୍ଥାନମାନଙ୍କରେ ବିଶେଷ ସମ୍ମାନିତ ହୋଇଥାନ୍ତି । ହବିପ୍ରମାନେ ଭାରତର ପ୍ରସିଦ୍ଧସ୍ଥାନ ବଙ୍ଗ, କାଶୀ ପ୍ରଭୃତିରେ ଶାକଦ୍ୱୀପୀ ବ୍ରାହ୍ମଣ" ବୋଲି ବିଖ୍ୟାତ । ଏହିପରି ଗୁଣର ଆଦର ବା ସମ୍ମାନ ସର୍ବତ୍ର ହେବା ଉଚିତ କିନ୍ତୁ ପୁରୋହିତ ବ୍ରାହ୍ମଣ ଓ ଗ୍ରହବିପ୍ର ଜାତି ଉଭୟଙ୍କ ମଧ୍ୟରେ ଦେଖା ପାଉନା-ପଣ ଯଜମାନ ଦ୍ୱାରରେ ସମୟ ସମୟରେ ଗୋଳମାଳ ଉପସ୍ଥିତ ହୁଏ । ସେ ସ୍ଥାନରେ ପୁରୋହିତ ବ୍ରାହ୍ମଣମାନେ ପ୍ରତାରଣା ଉଦ୍ଭାବନ କରନ୍ତି,—ଯହିଁରେ କି ଗ୍ରହବିପ୍ରମାନେ ଅଂଶ ପାଇବାରୁ ବଞ୍ଚିତ ହେବେ । ଏପର ଗେହୁ ଯାଜକ-ବ୍ୟବସାୟୀ ବ୍ରାହ୍ମଣମାନଙ୍କ ଈର୍ଷ୍ୟାନ୍ୱିତ କୁଶିକ୍ଷାରେ ମଧ୍ୟ ସାଧାରଣ ଯଜମାନମାନେ ପଡ଼ିଯାନ୍ତି । ଏହା ଦେଖି ମୋର ସ୍ୱଜାତୀ ହେବାରୁ ଗ୍ରହବିପ୍ରଙ୍କ ସମ୍ବନ୍ଧରେ ଯାବତୀୟ ଆଲୋଚନା କରିବାରେ ପ୍ରବୃତ୍ତ ହେଲି, ଯଦ୍ଦ୍ୱାରା ସାଧାରଣଙ୍କର ସନ୍ଦେହ

ଦୂରୀଭୂତ ହେବ । ସୁତରାଂ ଯେଉଁମାନେ ନିଜକୁ ହିନ୍ଦୁ ବୋଲି ପରିଚୟ ଦିଅନ୍ତି, ଯେମାନେ ଶାସ୍ତ୍ରମାନ୍ୟ କରନ୍ତି ; ତାହା ନହେଲେ କର୍ମକାଣ୍ଡପରି ନିଷ୍ଫଳ ହୁଏ । ଏ ବିଷୟ ଶାସ୍ତ୍ରରୁ ବହୁଳ ପ୍ରମାଣ ଉଦ୍ଧୃତ ହୋଇଅଛି । ସମସ୍ତେ ଯେପରି ଉପବୀତ ଜାତ ସମ୍ବନ୍ଧରେ ମୌଳିକତତ୍ତ୍ୱ ଓ ଉପଯୋଗ ବୁଝିପାରିବେ, ଅଥଚ ଘୃଣାବଜ୍ଞା କରିବେ ନାହିଁ, ତାହାର ଉପାୟ ସ୍ୱରୂପ ଏହି "ଉପବୀତ ଚନ୍ଦ୍ରିକା" ନାମକ କ୍ଷୁଦ୍ର ପୁସ୍ତିକାଟି ସମ୍ପାଦିତ କଲି ।

ଏ ପୁସ୍ତକ ସଙ୍କଳନ ସମୟରେ ଶ୍ରୀ ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ "ବ୍ରାହ୍ମଣକାଣ୍ଡ" ଏବଂ ଶ୍ରୀ ଅଶୁତୋଷ ଲେନାଙ୍କ ପ୍ରଣୀତ "ଆଚାର୍ଯ୍ୟ ବ୍ରାହ୍ମଣ" ପୁସ୍ତକରୁ ଅନେକ ସାହାଯ୍ୟ ପାଇଅଛି । ଶ୍ରୀ କୃତ୍ତିବାସ ଜ୍ୟୋତିର୍ଭୂଷଣ ଓ ଶ୍ରୀ ରମେଶ୍ଚନ୍ଦ୍ର ଶାସ୍ତ୍ରୀ ମହାଶୟଙ୍କ ସହାୟତା କରିଥିବାରୁ ଏଥିରେ ମୋର ଶ୍ରମଲାଘବ ହୋଇଅଛି । ଉପବୀତ ସମାଜରେ ଏପରି ଉତ୍ସାହୀ ବ୍ୟକ୍ତି ଅଛନ୍ତି ଏବଂ ଅନେକେ ଅଶିକ୍ଷିତ ଓ ନିର୍ଧନୀ, ଏହା ଅବନତିର ପ୍ରଧାନ କାରଣ ଅଟେ ।

ଉପସଂହାରରେ ବକ୍ତବ୍ୟ ଏହିଯେ, ମାନବର କାର୍ଯ୍ୟ ଭ୍ରମସଙ୍କୁଳ, ସୁତରାଂ ଏ ପୁସ୍ତକରେ ଭାଷାଗତ ଦୋଷ ବା ଅନ୍ୟ ଭ୍ରମଥିଲେ ଦୂରଦର୍ଶୀ ବିଜ୍ଞପାଠକମାନେ ଅନୁଗ୍ରହ ପୂର୍ବକ ଜଣାଇଲେ ତାହା ୨ୟ ସଂସ୍କରଣରେ ଅବଶ୍ୟକମତେ ସଂଶୋଧିତ ହେବ । ଇତ୍ୟଲଂ ବିସ୍ତରେଣ ।

ନିବେଦକ

କୋମାରଡଙ୍ଗା,
ବାଲେଶ୍ୱର ।

ଶ୍ରୀ ସୀତାନାଥ ଆଚାର୍ଯ୍ୟ ।

# ସୂଚୀପତ୍ର ।

ଓଁ ନମଃ ଶ୍ରୀସୂର୍ଯ୍ୟାୟ ।

# ଗ୍ରହବିପ୍ର ଚନ୍ଦ୍ରିକା ।

## ପ୍ରଥମ ଅଧ୍ୟାୟ ।

### ମଙ୍ଗଳାଚରଣ ।

"ଅଖଣ୍ଡଂ ସଚ୍ଚିଦାନନ୍ଦମବାଙ୍ମନ ସଗୋଚରଂ ।
ଆତ୍ମାନମଖିଳାଧାରମାଶ୍ରୟେଽଭୀଷ୍ଟସିଦ୍ଧୟେ ।" ୧ ।

ଯଚ୍ଚକ୍ଷୁରେଷ ସବିତା ସକଳଗ୍ରହାଣାଂ,
ରାଜା ସମସ୍ତମୂର୍ତ୍ତିରଶେଷତେଜାଃ ।
ଯସ୍ୟାଜ୍ଞୟା ଭ୍ରମତି ସମ୍ଭୃତ କାଳଚକ୍ରୋ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୨ ।

ଓଁ ସୂର୍ଯ୍ୟ ପରମୋ ବ୍ରହ୍ମା ସୂର୍ଯ୍ୟଃ ପରମଃଶିବଃ ।
ଶ୍ରୀସୂର୍ଯ୍ୟଃ ପରମୋବିଷ୍ଣୁ ସ୍ତୂର୍ଯ୍ୟଂ ଶ୍ରେୟୋ ବ୍ରହ୍ମଣେ ନମଃ ।୩

ମୂର୍ତ୍ତିତ୍ରୈ ପରିକଳ୍ପିତଃ ଶଶଭୃତୋ ବର୍ତ୍ମା ପୁନର୍ଜ୍ଜନ୍ମନା-
ମାତ୍ମେତ୍ୟାତ୍ମବିଦାଂ କ୍ରତୁଶ୍ଚ ଯଜତାଂ ଭର୍ତ୍ତାମରଜ୍ୟୋତିଷାମ୍ ।
ଲୋକାନାଂ ପ୍ରଳୟୋଦ୍ଭବସ୍ଥିତିବିଭୁଶ୍ଚାନେକଧା ଯଃ ଶ୍ରୁତୌ
ବାଚନ୍ନଃ ସଦଦାତ୍ୱନେକକିରଣସ୍ତ୍ରୈଲୋକ୍ୟଦୀପୋ ରବିଃ । ୪ ।

ବନ୍ଦେ ଗୁରୁଂ ଦ୍ୱିଜଗଣୀଶମପେତ ଦୋଷଂ
ଭୂତୋଦ୍ଭବଂ ଭୁବନ ଭବ୍ୟ ଭୁବଂ ଭବ[illegible] ।
ମନ୍ୱାଦୟୋ ମୁନିଗଣାମନୁକାଶ୍ଚ ବଦ୍ୟାଃ
ଯେଷାଂ ବଚୋ ଭବତି ଧର୍ମ୍ମବିଧୌ ପ୍ରମାଣମ୍ । ୫ ।

## ଜାତିଚତୁଷ୍ଟୟର ଉତ୍ପତ୍ତି ।

ବ୍ରାହ୍ମଣୋଽସ୍ୟ ମୁଖମାସୀତ୍ ବାହୂରାଜନ୍ୟଃ କୃତଃ ।
ଉରୁ ଯଦସ୍ୟ ତଦ୍ବୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରୋଽଜାୟତଃ ।
(ଋକ୍‌ବେଦ ପୁରୁଷସୂକ୍ତ ।)

ଅର୍ଥ ।—ବିରାଟ୍ ପୁରୁଷଙ୍କ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉରୁଦ୍ୱୟରୁ ବୈଶ୍ୟ ଏବଂ ଚରଣଦ୍ୱୟରୁ ଶୂଦ୍ରଜାତି ଉତ୍ପନ୍ନ ହୋଇଥିଲେ ।

ଅହୌ ପ୍ରଜାପତେ ର୍ଜାତା ମୁଖାଦ୍ ବିପ୍ରାଃ ସଦାଗତାଃ ।
ବାହ୍ୱୋଶ୍ଚ କ୍ଷତ୍ରିୟା ଜାତା ଉର୍ୱୋର୍ବୈଶ୍ୟା ବିଜଜ୍ଞିରେ ।
ପାଦାଚ୍ଛୂଦ୍ରାଶ୍ଚ ସମ୍ଭୂତା ସ୍ତ୍ରିବର୍ଣ୍ଣସ୍ୟ ଚ ସେବକାଃ । (ଅଗ୍ନିପୁରାଣ)

ଅର୍ଥ ।—ମନୁଷ୍ୟ ସୃଷ୍ଟିର ପ୍ରଥମରେ ପ୍ରଜାପତିଙ୍କ ମୁଖରୁ ଯଜ୍ଞୀୟ ବିପ୍ର, ବାହୁଦ୍ୱୟରୁ କ୍ଷତ୍ରିୟ, ଉରୁଦ୍ୱୟରୁ ବୈଶ୍ୟ ଏବଂ ଚରଣଦ୍ୱୟରୁ ତ୍ରିବର୍ଣ୍ଣ ସେବକ ଶୂଦ୍ରଜାତିର ଉତ୍ପତ୍ତି ହୋଇଅଛି ।

ଏଥିରୁ ବୁଝାଗଲା ଯେ ବ୍ରାହ୍ମଣାଦି ବର୍ଣ୍ଣଚତୁଷ୍ଟୟ ଏକ ବିରାଟ୍ ପୁରୁଷଙ୍କର ଅବୟବ ଅଟନ୍ତି, ସମସ୍ତେ ଏକଶରୀରାନ୍ତର୍ଗତ ହେତୁ ଅପୃଥକ୍ ଅଟନ୍ତି । ହାତ, ଗୋଡ଼ ମୁଣ୍ଡ ପରି ଏକଶରୀର-ପାଇଁ ଉଦ୍ୟତ ।

## ଗ୍ରହବିପ୍ରଙ୍କର ଉତ୍ପତ୍ତି ।

ବ୍ରହ୍ମାଙ୍କ ମୁଖରୁ ବ୍ରାହ୍ମଣ ଜାତିର ଉତ୍ପତ୍ତି ହୋଇଅଛି । ମାତ୍ର ଗ୍ରହବ୍ରାହ୍ମଣ ବା ଗ୍ରହବିପ୍ରର ଉତ୍ପତ୍ତି ଯେ ସେହି ବ୍ରହ୍ମାଙ୍କ ମୁଖରୁ ହୋଇଅଛି (ତାହାର ନିଦର୍ଶନ କଅଣ ? ଏହି ପ୍ରଶ୍ନ କେହି ଉତ୍ଥାପନ କରିପାରନ୍ତି) । ସାମବେଦୀୟ କୌଥୁମଶାଖାର ଅନ୍ତର୍ଗତ ବ୍ରହ୍ମସିଦ୍ଧାନ୍ତ ଗ୍ରନ୍ଥରେ ପ୍ରମାଣ ଅଛି, ଯଥା:—

"ସହସ୍ରଶୀର୍ଷା ପୁରୁଷଃ ସର୍ବତୋ ଭୂମିଂ ସୃଷ୍ଟ୍ୱା ଉତ୍କଳାନ୍ତ୍ୟେ ତ୍ୱଂ ତଥ୍ୟର୍ଥାୟ ପ୍ରକାଶତଃ ସପାଦଶତଂ ମୁଖତୋ ଉତ୍କଳୋଶେ-ଷ୍ଟୃତ୍ୱେନ ଉତ୍କଳବ୍ରାହ୍ମଣାନ୍ ସାମଗାନାଂଶ୍ଚ ନବଗୋତ୍ରାନ୍ ବାତ୍ସ୍ୟ, ମୌଦ୍ଗଲ୍ୟ, କାଶ୍ୟପ, ପରାଶର, ଭରଦ୍ୱାଜ, ଘୃତକୌଶିକ, ଶାଣ୍ଡିଲ୍ୟ, ଗୌତମ, ସାବର୍ଣ୍ଣିଭ୍ୟଶ୍ଚ ଶ୍ରୁତ୍ୱାଧ୍ୟାୟ ତ୍ୱଂ ସପାଦଶତ ପ୍ରମିତକନ୍ୟକାଃ ପରଂ ମୁଖତଃ ସମ୍ପାଦ୍ୟ ଦତ୍ତବାନ ଅସୃଜେତ୍ ।"

ଅର୍ଥ ।—ସହସ୍ରମୁଖ ବିରାଟ୍‌ପୁରୁଷ ବ୍ରହ୍ମା ସମସ୍ତ ଜଗତ ସୃଷ୍ଟିକରି ଉତ୍କଳମାନଙ୍କ ଶାନ୍ତି ନିମିତ୍ତ ତୃଂ ଏହି ଉତ୍କଳଭୂମିର ସହିତ ସ୍ୱର୍ଗୀୟ ନିବନ୍ଧ ଏବଂ ତଥ୍ୟ ପ୍ରକୃତ ବିଷୟ ସବିଶେଷ ପ୍ରକାଶ କରିବା ସକାଶେ ନିଜମୁଖରୁ ଉତ୍କଳ ଅଂଶରେ ଏକଶତ ପଞ୍ଚବିଂଶତି (୧୨୫) ସଂଖ୍ୟକ ଉତ୍କଳବିପ୍ର ସୃଷ୍ଟି କରି ସେମାନଙ୍କୁ ଚତୁର୍ବେଦର ଅଧିକାର ଏବଂ ସାମଗାନ କରିବାର ଶକ୍ତି ଦେଇଥିଲେ । ସେମାନେ ବାତ୍ସ୍ୟ, ମୌଦ୍ଗଲ୍ୟ, କାଶ୍ୟପ, ପରାଶର, ଭରଦ୍ୱାଜ, ଘୃତକୌଶିକ, ଶାଣ୍ଡିଲ୍ୟ, ଗୌତମ ଓ ସାବର୍ଣ୍ଣି ଏହି ନବଗୋତ୍ର ସମ୍ପନ୍ନ ହେଲେ । ଏମାନଙ୍କ ବିବାହ ସକାଶେ ବିରାଟ୍‌ପୁରୁଷ ତୃଂ ଏହି ଉତ୍କଳଭୂମିର ସହିତ ସ୍ୱୀୟ ମୁଖରୁ ଏକଶତ ପଞ୍ଚବିଂଶତି (୧୨୫) ସଂଖ୍ୟକ କନ୍ୟା ସୃଷ୍ଟି କରି ସେମାନଙ୍କୁ ସମର୍ପଣ କରିଥିଲେ ।

"ପ୍ରିୟେ ଉତ୍କଳ ବକ୍ତ୍ରସ୍ୟ ବ୍ରହ୍ମଣୋ ମୁଖତଃ ପୁରା ।
ଉତ୍କଳାଂଶୈରୁତ୍କଳବିପ୍ରାଃ ସ୍ୟୁଃ ସପାଦ ଶତ ସଂଖ୍ୟୟା ।

(ଉତ୍କଳଯାମଳ ।)

ଅର୍ଥ ।—(ପାର୍ବତୀ ଦେବୀ ପଚାରିବାରୁ ମହାଦେବ କହିଲେ) ହେ ପ୍ରିୟେ ! ପୂର୍ବକାଳରେ ସହସ୍ରବଦନ ବ୍ରହ୍ମାଙ୍କ ମୁଖରୁ

ସୂର୍ଯ୍ୟାଂଶ ଦ୍ୱାରା ଏକଶତ ପଞ୍ଚବିଂଶତି ସଂଖ୍ୟକ ଗ୍ରହବିପ୍ର ଜନ୍ମ ହୋଇଥିଲେ ।

ଉପରୋକ୍ତ ବଚନ ଦ୍ୱୟର ତୁଳନାରୁ ଦେଖାଯାଉଅଛି ଯେ, ଗ୍ରହବିପ୍ର ଏବଂ ଅନ୍ୟାନ୍ୟ ବିପ୍ରମାନଙ୍କର ଜନ୍ମ ଏକାପ୍ରକାର ; ମାତ୍ର ଉଭୟ ମଧ୍ୟରେ ପାର୍ଥକ୍ୟ ଏତିକି ଯେ ଗ୍ରହମାନଙ୍କର ଅର୍ଚ୍ଚନା ପାଇଁ ସୂର୍ଯ୍ୟାଂଶରେ ଗ୍ରହବିପ୍ରମାନଙ୍କର ଉତ୍ପତ୍ତି ଏବଂ ଦେବତାଙ୍କ ଆରାଧନାପାଇଁ ଦେବାଂଶ ବା ସୁରାଂଶରେ ଅନ୍ୟାନ୍ୟ ବିପ୍ରମାନଙ୍କର ଉତ୍ପତ୍ତି ହୋଇଅଛି ! ନିମ୍ନଲିଖିତ ପ୍ରମାଣ ଦ୍ୱାରା ତାହାର ଯଥାର୍ଥ ଉପଲବ୍ଧି ହେବ ।

"ସଙ୍କେତୋଦ୍ଭୂମିଂ ସୃଷ୍ଟ୍ୱା ସୁରସେବାର୍ଥଂ ପାଦୋନ ଚତୁଃଶତ ମନ୍ୟାଯ୍ୟତଃ ସୁରାଂଶୈର୍ବ୍ରାହ୍ମଣାନ୍ ତ୍ରିବିଧାନ୍ ସାଗ୍ନିକ ନିରଗ୍ନିକ ବାଜୀକ୍ଷାନ୍ ଋଗ୍‌ବେଦ ସାମବେଦ ଯଜୁର୍ବେଦାଥର୍ବବେଦିନଃ ସମ୍ପାଦ୍ୟୋପାଦ୍ୟାୟ ସଞ୍ଚାଗାଗ୍ନି ପ୍ରମିତ କନ୍ୟକା ଅନ୍ୟମୁଖତଃ କୃତୋଦ୍ୱାହସତ ଜାମାତୃଚ୍ଛେଦ ।" (ବ୍ରହ୍ମସିଦ୍ଧାନ୍ତ ।)

ଅର୍ଥ ।—ସହସ୍ରଶୀର୍ଷ ବିରାଟ୍ ପୁରୁଷ ସଙ୍କେତୋଦ୍ଭବରେ ଜଗତ୍ ସୃଷ୍ଟି କରି ଦେବତାମାନଙ୍କ ସେବା ସକାଶେ ନିଜମୁଖ ଦ୍ୱାରା ସୁରାଂଶରୁ ୩୭୫ ସଂଖ୍ୟକ ସାଗ୍ନିକ, ନିରଗ୍ନିକ ଓ ବାଜୀକ୍ଷ ଏହି ତ୍ରିବିଧ ଋକ-ଯଜୁ-ସାମ ଓ ଅଥର୍ବବେଦ ସମ୍ପନ୍ନ ବ୍ରାହ୍ମଣ ସୃଷ୍ଟିକଲେ ଏବଂ ସେମାନଙ୍କ ବିବାହ ନିମନ୍ତେ ୩୭୫ ସଂଖ୍ୟକ କନ୍ୟା ସର୍ଜ୍ଜନା କରି ସେମାନଙ୍କୁ ସମର୍ପଣ କରିଥିଲେ ।

ଗ୍ରହାଣାମର୍ଚ୍ଚନାର୍ଥେତୋଃ ଶାକଦ୍ୱୀପ ସମ୍ଭବାଃ ।
ବ୍ରହ୍ମବକ୍ତ୍ରାଦ୍ଭବେତ୍ତନ୍ତୁ ଦୈବଜ୍ଞୋ ବ୍ରାହ୍ମଣୋ ଧ୍ରୁବଂ ।
( ବ୍ରହ୍ମଯାମଳ । )

ଅର୍ଥ ।—ଗ୍ରହମାନଙ୍କର ଅର୍ଚ୍ଚନାପାଇଁ ବ୍ରହ୍ମାଙ୍କ ମୁଖରୁ ଦୈବଜ୍ଞ ବ୍ରାହ୍ମଣ ଉତ୍ପନ୍ନ ହୋଇ ଶାକଦ୍ୱୀପରେ ବାସ କରୁଥିଲେ ।

ଶାସ୍ତ୍ରାନ୍ତରରେ ଶାକଦ୍ୱୀପବାସୀ ବ୍ରାହ୍ମଣଙ୍କର ଉତ୍ପତ୍ତି ସମ୍ବନ୍ଧରେ ଭିନ୍ନ ପ୍ରମାଣ ମିଳଇ । ଭବିଷ୍ୟପୁରାଣରେ ଉକ୍ତଅଛି ଯେ, ଶାକଦ୍ୱୀପର ମହୀପତି ପ୍ରିୟବ୍ରତ-ତନୟ ମେଧାତିଥି, ସୂର୍ଯ୍ୟଦେବଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରିବା ସକାଶେ ଗୋଟିଏ ପରମରମଣୀୟ ଗୃହ ନିର୍ମାଣ କରି ତନ୍ମଧ୍ୟରେ ଗୋଟିଏ ସୁଲକ୍ଷଣା ହେମମୟୀ ପ୍ରତିମା ସ୍ଥାପିତ କରିଥିଲେ ଏବଂ ଉକ୍ତ ପ୍ରତିମା-ପୂଜକ ବ୍ରାହ୍ମଣ ନିମନ୍ତେ ସୂର୍ଯ୍ୟଦେବଙ୍କୁ ପ୍ରାର୍ଥନା କଲେ । ନୃପତିଙ୍କ ପ୍ରାର୍ଥନାନୁସାରେ ସୂର୍ଯ୍ୟଦେବ ୮ଜଣ ବ୍ରାହ୍ମଣ ସର୍ଜନା କରି-ଥିଲେ । ସେମାନେ କେବଳ ସୂର୍ଯ୍ୟ ଉପାସକ ବୋଲି ମଗ ନାମରେ ପରିଚିତ । ଭବିଷ୍ୟପୁରାଣ ୧୭୬ ଅଧ୍ୟାୟରେ ଲିଖିତ ହୋଇଅଛି ଯେ,—

ସୃଜାମି ପ୍ରଥମଂ ବର୍ଣ୍ଣଂ ମଗସଞ୍ଜ୍ଞ ମନୌପମଂ ।
ଇତ୍ୟୁକ୍ତ୍ୱା ତମହଂ ବୀର ସକାନଂ ଖଗସତ୍ତମ !
ନଗାମ ପରମାଂ ଚନ୍ତାଂ ତସ୍ୟ କାର୍ଯ୍ୟସ୍ୟ ସିଦ୍ଧୟେ ।
ଅଥମେ ଚନ୍ତ୍ୟମାନସ୍ୟ ସ୍ୱଶରୀରଦ୍ବିନଃସୃତାଃ ।
ଷଣିଭୂଦେନ୍ଦ୍ର ସକାଶାଃ ସଂଖ୍ୟୟାପ୍ଯଷ୍ଟୌ ମହାବଳାଃ ।
ପଠନ୍ତ ଚତୁରୋବେଦାନ୍ ସାଙ୍ଗୋପନିଷଦାନ୍ ଖଗ ।

ଅର୍ଥ ।—(ସୂର୍ଯ୍ୟଦେବ କହିଲେ) "ଅମ୍ଭେ ତୁମ୍ଭର ମଙ୍ଗଳ ସକାଶେ ମଗ ନାମଧେୟ ଅନୁପମ ବ୍ରାହ୍ମଣମାନଙ୍କୁ ସୃଷ୍ଟି କରୁଅଛୁଁ ।" ହେ ଖଗସତ୍ତମ ! ନୃପତିଙ୍କୁ ଏହି କଥା କହି କାର୍ଯ୍ୟସିଦ୍ଧି ନିମିତ୍ତ କିଛି ସମୟ ଚନ୍ତାକଲି । ମୁଁ ଚନ୍ତାନିବିଷ୍ଟ ହେବାରୁ ମୋ ଶରୀରରୁ ସହସା ଅଠଜଣ ମହାବଳ ବ୍ରାହ୍ମଣ ପ୍ରାଦୁର୍ଭୂତ ହେଲେ । ସେହି ବ୍ରାହ୍ମଣମାନଙ୍କର କର୍ପୂର, କୁନ୍ଦ ଓ ଚନ୍ଦ୍ରପରି ଅତିଶୟ ଶୁଭ୍ରକାନ୍ତି, (ଯଥାଧେୟ କାଷାୟବସନ)

ଏବଂ ସେମାନେ ସମସ୍ତେ ସାଙ୍ଗୋପାଙ୍ଗଷଡ଼ ଚତୁର୍ବେଦ ପାଠରେ ନିରତ ଥିଲେ ।

ଯୋଽୟଂ ମଗେଷୁ ବୈ ପ୍ରୋକ୍ତୋମଗୋଭବ୍ୟୋ ଦ୍ୱିଜୋତ୍ତମଃ ।
ଭବ୍ୟାସ୍ତୈତେ ସ୍ମୃତା ବିପ୍ରା ଅଦୀଣାଙ୍ଗ ସମୁଦ୍ଭବାଃ ।
ଭବ୍ୟାସ୍ତେ ବ୍ରାହ୍ମଣାଶ୍ଚୈବ ଭୋଜକା ମମ ପୂଜକାଃ ।
ପୂଜୟନ୍ତି ଚ ତେ ଦେବାନ୍ ଭବ୍ୟତ୍ୱଂ ତେନ ତେ ଗତାଃ ।
ଭୋଜକାଦଭ୍ୟଜାତାସ୍ତୁ ଭବ୍ୟାସ୍ତେ ପରିକୀର୍ତ୍ତିତାଃ ।

(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ।)

ଅର୍ଥ ।—ସୂର୍ଯ୍ୟଦେବ କହୁଅଛନ୍ତି,—ଯେଉଁମାନେ ମଗ ନାମରେ ଅଭିହିତ ସେମାନେ ଭବ୍ୟସଂଜ୍ଞକ ଉତ୍କୃଷ୍ଟ ବ୍ରାହ୍ମଣ । ଏହି ଭବ୍ୟ ବ୍ରାହ୍ମଣମାନେ ମୋର (ସୂର୍ଯ୍ୟ) ପୂଜକ ବୋଲି ସେମାନେ ଭୋଜକ* ନାମରେ ବିଖ୍ୟାତ । ସେମାନେ ଦେବତା ପୂଜା କରନ୍ତି ଏନିମନ୍ତେ ସେମାନେ ଭବ୍ୟସଂଜ୍ଞା ଲାଭ କରିଅଛନ୍ତି ; ଭୋଜକମାନେ ସୂର୍ଯ୍ୟଦେବଙ୍କ ଦେହରୁ ଜାତ ବୋଲି ଭବ୍ୟ ନାମରେ ଖ୍ୟାତ ହୁଅନ୍ତି ।

"ମଗା ବ୍ରାହ୍ମଣଭୂୟିଷ୍ଠା ମାଗଧା କ୍ଷତ୍ରିୟାସ୍ତଥା ।
ବୈଶ୍ୟାସ୍ତୁ ମାନସାଶ୍ଚୈଷାଂ ଶୂଦ୍ରାସ୍ତେଷାନ୍ତୁ ମନ୍ଦଗାଃ ।
ନ ତେଷାଂ ସଙ୍କରଃ କଶ୍ଚିଦ୍ ବର୍ଣ୍ଣାଶ୍ରମକୃତଃ କ୍ୱଚିତ୍ ।
ଏତତ୍ପସ୍ଥାନ୍ମୁପାସୃଷ୍ୟ ନିର୍ମ୍ମିତାବୈ ସୁଚ୍ଚମସ୍ତୁ ।
ତେଭ୍ୟୋ ବେଦାଶ୍ଚ ଚତ୍ୱାରଃ ସରହସ୍ୟା ମସ୍ୟେପତାଃ ।

( ସାମ୍ବପୁରାଣ, ୨୬।୩୦—୩୨ )

---

* "ନୈବେଦ୍ୟଂ ଭକ୍ଷତେ ଯସ୍ମାଦ୍ ଭୋଜୟନ୍ତି ଚ ଭକ୍ତକଂ ।
ପୂଜୟନ୍ତି ଚ ଦେବାନାଂ ତେନ ତେ ଭୋଜକାଃ ସ୍ମୃତାଃ ।"
'ମଗାନାଂ ଭୋଜକତ୍ୱ ନିଃ ।' ଇତି ଭବିଷ୍ୟପୁରାଣ ୧୪୦ ଅଧ୍ୟାୟ ।

ଅର୍ଥ ।—ମଗମାନେ ବ୍ରାହ୍ମଣ, ମାଗଧମାନେ କ୍ଷତ୍ରିୟ, ମାନସମାନେ ବୈଶ୍ୟ ଏବ ମନ୍ଦଗମାନେ ଶୂଦ୍ର ନାମରେ ପରିଚିତ । ଏମାନଙ୍କ ମଧ୍ୟରେ ସଙ୍କରବର୍ଣ୍ଣ ନାହିଁ । ସମସ୍ତେ ଧର୍ମାଶ୍ରିତ, ଏମାନେ ଅମର (ସୂର୍ଯ୍ୟ) ତେଜଦ୍ୱାରା ସୃଷ୍ଟ ହୋଇ ଅଛନ୍ତି । ଏମାନଙ୍କପାଇଁ ଆମ୍ଭେ ସରହସ୍ୟ ଶ୍ରୁତିବେଦ ପ୍ରକାଶ କରିଅଛୁଁ ।

ବ୍ରହ୍ମସିଦ୍ଧାନ୍ତ, ରୁଦ୍ରଯାମଳ, ବ୍ରହ୍ମଯାମଳ, ଭବିଷ୍ୟପୁରାଣ ଓ ସାମ୍ବପୁରାଣାଦି ମତରେ ( ଶାକଦ୍ୱୀପୀ ) ଗ୍ରହବିପ୍ରମାନେ ବ୍ରାହ୍ମଣ ଜାତି ସୁବଂଶ ବ୍ରାହ୍ମଣଙ୍କଠାରୁ ଭିନ୍ନ ଏବଂ ଗ୍ରହାଂଶ ବ୍ରାହ୍ମଣ ବୋଲି ପ୍ରସିଦ୍ଧ । ବର୍ତ୍ତମାନ ଭାରତର ଅନେକ ସ୍ଥଳରେ ତଥା ହିନ୍ଦୁସ୍ଥାନରେ ମଧ୍ୟ ଗ୍ରହବିପ୍ରଙ୍କୁ ଶାକଦ୍ୱୀପୀ ବ୍ରାହ୍ମଣ ବୋଲି କହନ୍ତି ।

"ମଗାସ୍ତୁ ବ୍ରାହ୍ମଣା ଦୃଙ୍ଗଂ ଦିବ୍ୟାଃ ସୂର୍ଯ୍ୟମଣ୍ଡଳାତ୍ ।
ଜ୍ୱଳଦର୍କ ପ୍ରତିକାଶାଃ ଶାକଦ୍ୱୀପ ମବାତରନ୍ । (ବଲ୍ଲାଲଚରିତ)

ଅର୍ଥ ।—ଉଜ୍ଜ୍ୱଳ ସୂର୍ଯ୍ୟଦେବଙ୍କପରି ପ୍ରଭାବଶାଳୀ ମଗ ବ୍ରାହ୍ମଣମାନେ ସୂର୍ଯ୍ୟମଣ୍ଡଳରୁ ଜାତ ହୋଇ ଶାକଦ୍ୱୀପରେ ଅବତରଣ କରିଥିଲେ । ସୂର୍ଯ୍ୟଦେବଙ୍କଠାରୁ ଗ୍ରହବିପ୍ର ବା ମଗ ବ୍ରାହ୍ମଣମାନେ ଜାତ ହୋଇଅଛନ୍ତି ।

"ଶାକଦ୍ୱୀପାତ୍ ସୁପର୍ଣ୍ଣେନ ଗଚ୍ଛତୋ ଦ୍ୱିଜପୁଙ୍ଗବଃ । (୧)
ଶାକଦ୍ୱୀପୀ ଦ୍ୱିଜଃ ସୋଽଭୂଦ୍ ବିଖ୍ୟାତୋ ଧରଣୀତଳେ ।
ତସ୍ମାଦ୍‌ବୈଗଣକୋ ଜାତୋ ହୋମପୂଜା ପରାୟଣଃ ।"
(ବ୍ରହ୍ମବର୍ତ୍ତପୁରାଣ ଉତ୍ତରଖଣ୍ଡ ।)

(୧) "ଦ୍ୱିଜପୁଙ୍ଗବ" ସ୍ଥଳେ "ଯତ୍ର ଦେବତାଃ" ଏହିପରି ପାଠାନ୍ତର ଅଛି, କିନ୍ତୁ ତାହା ଶାସ୍ତ୍ରବିରୁଦ୍ଧ । କାରଣ ଶାକଦ୍ୱୀପରେ କେବଳ ବ୍ରାହ୍ମଣର ଉତ୍ପତ୍ତି ହୋଇନାହିଁ ।

ଅର୍ଥ ।—ଶାକଦ୍ୱୀପରୁ ଗରୁଡ଼ ଯେଉଁ ଶୈବବ୍ରାହ୍ମଣମାନଙ୍କୁ ଅଣାଇଥିଲେ, ସେମାନେ ପୃଥିବୀରେ "ଶାକଦ୍ୱୀପୀ ବ୍ରାହ୍ମଣ" ନାମରେ ବିଖ୍ୟାତ । ସେହି ବ୍ରାହ୍ମଣଙ୍କଠାରୁ ହୋମପୂଜା-ପରାୟଣ ଗଣକମାନଙ୍କର ଉତ୍ପତ୍ତି ହୋଇଥିଲା ।

ଭବିଷ୍ୟପୁରାଣୋକ୍ତ ମଗ, ଦିବ୍ୟ, ବାଚକ ଓ ଭୋଜକ ଏବଂ ସାମ୍ବପୁରାଣୋକ୍ତ ମଗ ଏକଜାତି ଭିନ୍ନ ନୁହେଁ । ଏମାନେ ସୂର୍ଯ୍ୟଦେବଙ୍କ ଶରୀରରୁ ଉତ୍ପନ୍ନ ହୋଇଅଛନ୍ତି । ତେଣୁ ସୂର୍ଯ୍ୟଦେବ କୌଣସି ଜାତିର ସୃଷ୍ଟି କରନାହାନ୍ତି । ଉପାସକ ଉପାସ୍ୟ ଦେବତାଙ୍କ ଅଂଶ ସମ୍ଭୂତ, ଯେହେତୁ ଶିବ କହିଅଛନ୍ତି ଯଥା ;—

"ମଦଂଶାସ୍ତେବ ଯେ ଭକ୍ତାଃ ଶୈବାସ୍ତେ ପରିକୀର୍ତ୍ତିତା ।"

(ମୁଣ୍ଡମାଳା ତ. ।)

ଅର୍ଥାତ୍ ଶୈବମାନେ ମୋର ଅଂଶ ସମ୍ଭୂତ । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଭିନ୍ନ କୌଣସି ଦେବତା ପ୍ରଜାସୃଷ୍ଟି କରନାହାନ୍ତି । ସୁତରାଂ ବ୍ରହ୍ମସିଦ୍ଧାନ୍ତ, ରୁଦ୍ରଯାମଳ ଓ ବ୍ରହ୍ମଯାମଳୋକ୍ତ ବ୍ରହ୍ମାଙ୍କର ମୁଖୋତ୍ପନ୍ନ ଗ୍ରହବ୍ରାହ୍ମଣ ସୂର୍ଯ୍ୟଦେବଙ୍କର ଉପାସକ ; ଏଥିଯୋଗୁଁ ଭବିଷ୍ୟପୁରାଣ ଓ ସାମ୍ବପୁରାଣରେ ସୂର୍ଯ୍ୟାଙ୍ଗ ସମ୍ଭୂତ ବୋଲି କଳ୍ପିତ ହୋଇଅଛି । ସୁବିଜ୍ଞ ପାଠକମାନେ ଦେଖିବେ ଯେ, ପ୍ରଥମେ ପ୍ରଜାସୃଷ୍ଟି ସମୟରେ ଜାତି ଥିଲା ତେଣୁ ଭେଦବୁଦ୍ଧି ନ ଥିଲା । କାଳକ୍ରମେ କର୍ମ ବା ଉପାସନା ଦ୍ୱାରା ଜାତି ନିର୍ବାଚିତ ହୋଇଅଛନ୍ତି । ଭରଦ୍ୱାଜ ଏ ସମ୍ବନ୍ଧରେ ଭୃଗୁଙ୍କୁ ପଚାରିବାରେ ଭୃଗୁ ଉତ୍ତର ଦେଲେ ;—

"ନ ବିଶେଷୋଽସ୍ତି ବର୍ଣ୍ଣାନାଂ ସର୍ବଂ ବ୍ରାହ୍ମମିଦଂ ଜଗତ୍ ।
ବ୍ରାହ୍ମଣା ପୂର୍ବସୃଷ୍ଟଂ ହି କର୍ମଭିର୍ବର୍ଣ୍ଣତାଂ ଗତମ୍ ।"

(ମହାଭାରତ ମୋକ୍ଷଧର୍ମ ପର୍ବାଧ୍ୟାୟ ୧୮୮)

ଅର୍ଥ ।—ପ୍ରକୃତିରେ ବର୍ଣ୍ଣର ଇତର ବିଶେଷ ନ ଥିଲାହିଁ, ଜଗତରେ ଯାବତୀୟ ମନୁଷ୍ୟ ଦ୍ୱିଜରେ ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ହୋଇଥିଲେ । ସମସ୍ତେ ( ଏକଶଷବନ୍ତର୍ଗତ ହେତୁ ) ବ୍ରହ୍ମ ନାମରେ ପରିଚିତ ହେଉଥିଲେ । କାଳକ୍ରମେ ଗୁଣ ଓ କର୍ମ ଦ୍ୱାରା ଜାତି ନିର୍ବାଚିତ ହୋଇଅଛି ।

ଗ୍ରହାଂଶ ବ୍ରାହ୍ମଣଙ୍କର କର୍ମ ଗ୍ରହପୂଜା ଓ ଗ୍ରହଦାନ ଗ୍ରହଣ କରିବା ଦ୍ୱାରା ଗ୍ରହବିପ୍ର ସଂଜ୍ଞା ପ୍ରାପ୍ତ ହୋଇଅଛନ୍ତି । ଭାରତରେ ଏମାନେ "ଶାକଦ୍ୱୀପୀ ବ୍ରାହ୍ମଣ" ବୋଲି ପରିଚିତ । (ସୁବିଜ୍ଞ ପାଠକମାନଙ୍କ ଗୋଚରାର୍ଥେ ଶାକଦ୍ୱୀପର ସଂକ୍ଷିପ୍ତ ବିବରଣ ଦ୍ୱିତୀୟ ଅଧ୍ୟାୟରେ ପ୍ରଦତ୍ତ ହେଲା ।)

# ଦ୍ୱିତୀୟ ଅଧ୍ୟାୟ ।

## ଶାକଦ୍ୱୀପର ଜାତିବିଭାଗ ।

ମହାଭାରତ ଭୀଷ୍ମପର୍ବ ୧୧ଶ ଅଧ୍ୟାୟରେ ଲେଖାଅଛି ଯେ, ଶାକଦ୍ୱୀପ ଜମ୍ବୁଦ୍ୱୀପର ଦ୍ୱିଗୁଣ, ଏହା କ୍ଷୀରୋଦ ସମୁଦ୍ରରେ ପରିବେଷ୍ଟିତ । ଯେଉଁଠାରେ ଅତି ପବିତ୍ର ଜନପଦସବୁ ଅବସ୍ଥିତ ଅଛି । ସେଠାକାର ପ୍ରଜାମାନେ ଶୂଦ୍ରବର୍ଣ୍ଣରେ ବିରକ୍ତ, ଧର୍ମଜୀବୀ ଓ ସ୍ୱ ସ୍ୱ ଧର୍ମରେ ଏକାନ୍ତ ଅନୁରକ୍ତ ଥିଲେ । ଶାକଦ୍ୱୀପର ପ୍ରମାଣ ଅନେକ ପୁରାଣାଦିରେ ବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି ।

ଏହି ଶାକଦ୍ୱୀପ* ଯେ କେଉଁସ୍ଥାନରେ ଅବସ୍ଥିତ ତାହା ନିରୂପଣ କରିବା କଠିନ ହେଲେହେଁ, ପୌରାଣିକ ଓ ଐତିହାସିକମାନେ ସ୍ଥିର କରିଅଛନ୍ତି ଯେ, ବର୍ତ୍ତମାନ ତାତାର, ଏସିଆଟିକ ରୁଷିଆ, ସାଇବେରିଆ, ମସ୍କୋଭି, କ୍ରିମିଆ, ପୋଲାଣ୍ଡ, ହଙ୍ଗେରିର କେତେକାଂଶ, ଲିଥୁଆନିଆ, ଜର୍ମାନିର ଉତ୍ତରାଂଶ, ସୁଇଡେନ, ନରୱେ ପ୍ରଭୃତି ଜନପଦ ସେହି ପ୍ରାଚୀନ ଶାକଦ୍ୱୀପ ଅନ୍ତର୍ଗତ ଥିଲା (୧) । ତୁର୍କିସ୍ଥାନ ବର୍ତ୍ତମାନ ପାରସ୍ୟଦେଶର ଉତ୍ତରାଂଶଠାରୁ ସୀମା ଆରମ୍ଭ । ପାରସିକମାନଙ୍କର ପ୍ରଧାନ ଧର୍ମ୍ମଶାସ୍ତ୍ର "ଅବସ୍ତା", ଏହି ଅବସ୍ତା ଗ୍ରନ୍ଥର ଯସ୍ନ ନାମକ ବିଭାଗରେ ଚାରିବର୍ଣ୍ଣର ଉଲ୍ଲେଖ ଅଛି । ଯସ୍ନ-ଟୀକାକାର ନେରିଓସିଙ୍ଗ ଅର୍ଥ କରିଅଛନ୍ତି—ଅଗ୍ରଣୀ, କ୍ଷତ୍ରିୟ, କୁଟୁମ୍ବିନ ବୈଶ୍ୟ ଓ ପ୍ରକୃତିକର୍ମ୍ମିଜ । ପଣ୍ଡିତ ହାର୍ଲି ସାହେବ ଉକ୍ତ ଜାତିବିଭାଗ ସମ୍ବନ୍ଧରେ ବ୍ରାହ୍ମଣ, କ୍ଷତ୍ରିୟାଦିର ଉଲ୍ଲେଖ କରିଅଛନ୍ତି (୨) । ଏହି ଚାରିଜାତି ବ୍ୟତୀତ ଶାକଦ୍ୱୀପରେ ଅନ୍ୟାନ୍ୟ ଜାତିଙ୍କର ମଧ୍ୟ ବାସ ଥିଲା, ତାହା ଗ୍ରୀକ ଐତିହାସିକମାନେ ଲିପିବଦ୍ଧ କରିଅଛନ୍ତି (୩) । ଭାଗବତାଦି ପୁରାଣମାନଙ୍କରେ ଲେଖାଅଛି ଯେ, ପ୍ରିୟବ୍ରତଙ୍କ ପୁତ୍ର ମେଧାତିଥି ଶାକଦ୍ୱୀପରେ ରାଜା ହୋଇଥିଲେ । ସୁତରାଂ

* "ଜମ୍ବୁଦ୍ୱୀପାତ୍ ପରଂ ଯସ୍ମାତ୍ ଶାକଦ୍ୱୀପମିତି ସ୍ମୃତମ୍ ।" (ଭବିଷ୍ୟପୁରାଣ) ଅର୍ଥାତ୍ ଜମ୍ବୁଦ୍ୱୀପ ପରେ ଶାକଦ୍ୱୀପ ବୋଲି ବର୍ଣ୍ଣିତ ।

(୧) ବ୍ରାହ୍ମଣକାଣ୍ଡ ୪ର୍ଥ ଅଂଶ ୬ପୃଷ୍ଠାରେ ବିଶେଷ ବିବରଣ ଦ୍ରଷ୍ଟବ୍ୟ ।

(୨) Indische tiieorieen over de Standenverdeeting, P. II.

(୩) Piukerton's Researches on Goth Vol, II, Tod's Raja-than, Vo. I, 51—57,

ଅତି ପ୍ରାଚୀନକାଳରୁ ଶାକଦ୍ୱୀପରେ ଚାତୁର୍ବର୍ଣ୍ଣ୍ୟ ସମାଜ ଗଠିତ ହୋଇଥିଲା, ପରେ କାଳକ୍ରମେ ଜାତିଭେଦ ପ୍ରଥା ରହିତ ହୋଇଅଛି । ସେ ଯାହାହେଉ ଶାକଦ୍ୱୀପରେ ଯେ ୪ ବର୍ଣ୍ଣ ଥିଲା, ତାହା ପାଠକମାନଙ୍କ ଅବଗତାର୍ଥେ ଧର୍ମଶାସ୍ତ୍ରରୁ ପ୍ରମାଣମାନ ଉଦ୍ଧୃତ କରାଗଲା ।

ମଗାଶ୍ଚ ମାଗଧାଶ୍ଚୈବ ମାନସା ମନ୍ଦଗାସ୍ତଥା ।
ମଗା ବ୍ରାହ୍ମଣଭୂୟିଷ୍ଠା ମାଗଧାଃ କ୍ଷତ୍ରିୟାସ୍ତଥା ।
ବୈଶ୍ୟାସ୍ତୁ ମାନସାସ୍ତେଷାଂ ଶୂଦ୍ରାସ୍ତେଷାନ୍ତୁ ମନ୍ଦଗାଃ ।
ଶାକଦ୍ୱୀପେ ତୁ ତୈ ର୍ବିଷ୍ଣୁଃ ସୂର୍ଯ୍ୟରୂପ ଧରସ୍ମୃତେ ।

(ବିଷ୍ଣୁପୁରାଣ ୨-୪-୭୦।୭୧)

ଅର୍ଥ ।—ମଗ, ମାଗଧ, ମାନସ ଓ ମନ୍ଦଗ ଏହି ଚାରିବର୍ଣ୍ଣ । ମଗମାନେ ବ୍ରାହ୍ମଣଶ୍ରେଷ୍ଠ, ମାଗଧମାନେ କ୍ଷତ୍ରିୟ, ମାନସମାନେ ବୈଶ୍ୟ ଓ ମନ୍ଦଗମାନେ ଶୂଦ୍ର । ଏହି ଶାକଦ୍ୱୀପରେ ସୂର୍ଯ୍ୟରୂପଧାରୀ ବିଷ୍ଣୁ ଅବସ୍ଥାନ କରୁଅଛନ୍ତି ।

ଭବିଷ୍ୟପୁରାଣ, ସାମ୍ବପୁରାଣ ଓ ମହାଭାରତ ଆଦି ଶାସ୍ତ୍ରରେ ଅବିକଳ ଏହିପରି ପ୍ରମାଣ ରହିଥିବାରୁ ତାହା ପୁନରୁଲ୍ଲେଖ କରିବା ଅନାବଶ୍ୟକ । ସୁତରାଂ ଶାସ୍ତ୍ରାନ୍ତରରେ ମଗ ଶବ୍ଦର ଅର୍ଥ ଯଥା ;—

"ମକାରେ ଭଗବାନ୍ ଦେବୋ ଭାସ୍କରଃ ପରିକୀର୍ତ୍ତିତଃ ।
ଗକାରେ ଧ୍ୟାନଯୋଗାଚ୍ଚ ମଗାହ୍ୟେତେ ପ୍ରକୀର୍ତ୍ତିତାଃ ।"

(ଭବିଷ୍ୟପୁରାଣ ୧୪୪ଅଃ, ୨୫ଶ୍ଳୋକ ।)

ଅର୍ଥ ।—ଭଗବାନ୍ ସୂର୍ଯ୍ୟଦେବ "ମ" ନାମରେ କଥିତ ହୁଅନ୍ତି ଏବଂ ଧ୍ୟାନଯୋଗର ନାମ "ଗ", ଏହି (ବ୍ରାହ୍ମଣ)ମାନେ ତାହାଙ୍କୁ (ସୂର୍ଯ୍ୟଦେବଙ୍କୁ) ଅବଧନା କରନ୍ତି ବୋଲି ସେମାନଙ୍କ ନାମ ମଗ ।

ପାରଶିକମାନଙ୍କ ଆଦିମ ଧର୍ମଶାସ୍ତ୍ର ଜନ୍ଦ ଅବସ୍ତା ଯସ୍ନ ବିଭାଗରେ (୧) "ମଗ" ଶବ୍ଦ ଅଛି, ତାହାର ଅର୍ଥ ଆଧ୍ୟାତ୍ମତତ୍ତ୍ୱ, ପରମାତ୍ମ ବ୍ରହ୍ମବିଦ୍ୟା । ଯେଉଁମାନେ ଆଧ୍ୟାତ୍ମତତ୍ତ୍ୱଶାଳୀ ସେହିମାନେ ମଗ ବା ମଗବ ନାମରେ ଖ୍ୟାତଥିଲେ (୨) । ଯସ୍ନରେ ଲେଖାଅଛି ଯେ, ଜରଥୁସ୍ତ୍ର (୩) ମଗବମାନଙ୍କୁ ପୂର୍ବକାଳରେ ସ୍ୱର୍ଗରାଜ୍ୟରେ ପ୍ରତିଷ୍ଠିତ କରାଇଥିଲେ । ହିରୋଡୋଟାସ ଲେଖିଅଛନ୍ତି, ପାରସ୍ୟ ସମ୍ରାଟ୍‌ମାନେ ଅଗ୍ନିପୂଜକ ମଗ ବା ମଗବ ନାମଧେୟ ପ୍ରସିଦ୍ଧ ବ୍ୟକ୍ତିମାନଙ୍କୁ ପୁରୋହିତରୂପେ ନିଯୁକ୍ତ କରୁଥିଲେ । ସୂର୍ଯ୍ୟୋପାସକମାନେ ପାରଶିକଙ୍କ ନିକଟରେ ମଘୁଶ୍ ବା ମଗ, ହିନ୍ଦୁପୁରାଣରେ ମଗ ବା ମଗସ୍ ଏବଂ ପ୍ରାଚୀନ ଗ୍ରିକମାନଙ୍କ ନିକଟରେ "ମଗୀ" ନାମ ପ୍ରସିଦ୍ଧଥିଲା (୪) ।

ମଗମାନେ ଯେ ସୂର୍ଯ୍ୟୋପାସକ ଥିଲେ ତାହା ଶାସ୍ତ୍ରୀୟ ଓ ଐତିହାସିକ ପ୍ରମାଣ ଦ୍ୱାରା ସ୍ପଷ୍ଟରୂପେ ଜଣାଯାଉଅଛି । ଏପର ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କ ମଧ୍ୟରେ ଶାକଦ୍ୱୀପୀ ବ୍ରାହ୍ମଣ ଯେ ଉତ୍କୃଷ୍ଟ, ତାହା ଶ୍ରୀଧରସ୍ୱାମୀ ବିଷ୍ଣୁପୁରାଣ ଟୀକାରେ ଲେଖିଅଛନ୍ତି—
'ମଗା ବ୍ରାହ୍ମଣଭୂୟିଷ୍ଠାଃ, ପୂର୍ବୋକ୍ତେଷୁ ବ୍ରାହ୍ମଣେଷୁମଧ୍ୟେଶ୍ରେଷ୍ଠାଃ ।'
ଅର୍ଥାତ୍ ପୂର୍ବୋକ୍ତ ୫ଦ୍ୱୀପର ବର୍ଣ୍ଣିତ ବ୍ରାହ୍ମଣମାନଙ୍କ ମଧ୍ୟରେ ମଗମାନେ ଶ୍ରେଷ୍ଠ ବ୍ରାହ୍ମଣ ଅଟନ୍ତି ।
"ମଗା ବ୍ରାହ୍ମଣ ଭୂୟିଷ୍ଠାଃ ସ୍ୱକର୍ମ ନିରତା ଦ୍ୱିଜାଃ ।" (ପଦ୍ମପୁରାଣ)

---

(୧) ଯସ୍ନ ୫୧।୧୫,
(୨) M, Haug's Essays on the Parsis, P, 169,
(୩) ମଗ-ପୁରୋହିତବଂଶୀୟ ଜନୈକ ଧର୍ମ ପ୍ରବର୍ତ୍ତକଙ୍କ ନାମ, ଏବ୍ୟକ୍ତି 'ଅବସ୍ତା' ପ୍ରଚାର କରିଥିଲେ ।
(୪) ବ୍ରାହ୍ମଣ-କାଣ୍ଡ ୪ର୍ଥ ଅଂଶ ୧୨ପୃଷ୍ଠା ।

# ତୃତୀୟ ଅଧ୍ୟାୟ ।

## ଗ୍ରହବିପ୍ରଙ୍କର ଉତ୍ପତ୍ତି ।

ଦ୍ୱାପର ଯୁଗରେ ଜଟଣି ନଦ୍ୟନ୍ତୀ [redacted] ଜାମ୍ବବତୀ ଗର୍ଭଜାତ ଶାମ୍ବ ଗ୍ରହବୈଗୁଣ୍ୟ ବଶତଃ ପ୍ରବଳ ରୋଗାକ୍ରାନ୍ତ ହୋଇଥିଲେ । ମାତ୍ର ସେ ସମୟରେ ଏତଦେଶ ବା ଜମ୍ବୁଦ୍ୱୀପରେ ଗ୍ରହବିପ୍ରମାନେ ଥିଲେନାହିଁ । ଗ୍ରହଶାନ୍ତି ଓ ସୂର୍ଯ୍ୟପୂଜା ନିମିତ୍ତ ତଦୀୟ କୁଳପୁରୋହିତ ଗୌରମୁଖଙ୍କ ବାକ୍ୟାନୁସାରେ, ଶାମ୍ବ ସୂର୍ଯ୍ୟଦେବଙ୍କର ଶରଣାପନ୍ନ ହେବାରୁ ସୂର୍ଯ୍ୟଦେବ କହିଲେ ;—

ନ ଯୋଗ୍ୟଃ ପରଚର୍ଯ୍ୟାୟାଂ ଜମ୍ବୁଦ୍ୱୀପେ ସମାନଘ ।
ମମ ପୂଜାପରାନ୍ କୃତ୍ୱା ଶାକଦ୍ୱୀପାଦିହାନୟ ।

(ଶାମ୍ବପୁରାଣ ୨୭ ଅଃ)

ଅର୍ଥ ।—ହେ ପୂତାତ୍ମନ୍ ! ମୋର ପୂଜାଦି କାର୍ଯ୍ୟରେ ଏହି ଜମ୍ବୁଦ୍ୱୀପ (ଭାରତ)ବାସୀ ବ୍ରାହ୍ମଣମାନଙ୍କର ଯୋଗ୍ୟତା ନାହିଁ । ମୋର ପୂଜାନୁରକ୍ତ ବ୍ରାହ୍ମଣମାନଙ୍କୁ ଶାକଦ୍ୱୀପରୁ ଆନୟନକର । ଅପିଚ—

ତାନ୍ ମଗାନ୍ ମମପୂଜାର୍ଥଂ ଶାକଦ୍ୱୀପାଦିହାନୟ ।
ଆରୁହ୍ୟ ଗରୁଡ଼ଂ ଶାମ୍ବ ଶୀଘ୍ରଂ ଗତ୍ୱା ବଗ୍ୟରସ୍ୱନ୍ ।

(ଭବିଷ୍ୟପୁରାଣ ୧୩୯)

ଅର୍ଥ ।—ହେ ଶାମ୍ବ ! ମୋର ପୂଜା ନିମିତ୍ତ ମଗ ବ୍ରାହ୍ମଣମାନଙ୍କୁ ଆନୟନ କରିବା ନିମନ୍ତେ ଅବିଳମ୍ବେ ଗରୁଡ଼ରେ ଆରୋହଣ କରି ଶାକଦ୍ୱୀପାଭିମୁଖେ ପ୍ରସ୍ଥାନ କର ।

ଏବଂ ଆନୀୟ ତୁ ମଗାନ୍ ଶାମ୍ବୋ ମହାଯଶେ ।
ସମହାତ୍ମା ପୁର ଶାମ୍ବଷ୍ଟନ୍ଦ୍ରଭାଗା ସରିତ୍ତଟେ ।

(ଭବିଷ ପୁରାଣ ୧୪ ।୪)

ଅର୍ଥ ।—ସେହିପରି ମଗ ବ୍ରାହ୍ମଣମାନଙ୍କୁ ଆଣି ଚନ୍ଦ୍ରଭାଗା ନଦୀର ତଟଦେଶରେ ସାମ୍ବପୁର ନାମକ ଗୋଟିଏ ମନୋରମା-ପୁର ନିର୍ମାଣ କରି ତହିଁରେ ରଖାଇ ଥିଲେ ।

ସାମ୍ବପୁରାଣରେ ବର୍ଣ୍ଣିତ ଅଛି ଯେ, ଗରୁଡ଼ ଯେଉଁ ୮ଜଣ ବ୍ରାହ୍ମଣଙ୍କୁ ଶାକଦ୍ୱୀପରୁ ଆଣିଥିଲେ, ସେମାନଙ୍କର ନାମ ;—

ମାର୍କଣ୍ଡୋ ମାଣ୍ଡବୋ ଗର୍ଗଃ ପରାଶର ସ୍ତଥା ଭୃଗୁଃ ।
ସନାତନୋଽଙ୍ଗିର ଜହ୍ନୁଃ ଶାକଦ୍ୱୀପୀୟଷ୍ଟକୋ ମୁନଃ ।
ତଦାତ୍ମଜୋ ମହାତେଜାଃ ଖ୍ୟାତୋଽଯଂ ଗ୍ରହଗ୍ରଜନାତ୍ ।
ଆନୀତୋ ଦେବଦେବେନ ଗରୁଡ଼େନ ମହାତ୍ମନା ।

ଅର୍ଥ ।—ମାର୍କଣ୍ଡ, ମାଣ୍ଡବ, ଗର୍ଗ, ପରାଶର, ଭୃଗୁ, ସନାତନ, ଅଙ୍ଗିର ଓ ଜହ୍ନୁ ; ଏହି ଅଠଜଣ ମୁନି ଶାକଦ୍ୱୀପରେ ଅବସ୍ଥିତ ଥିଲେ । ଏମାନଙ୍କର ପୁତ୍ରମାନେ ଗ୍ରହଗଣ ଗଣନାରେ ମହାତେଜସ୍ୱୀ ଥିଲେ । ଦେବଦେବ ଶ୍ରୀକୃଷ୍ଣ ଗରୁଡ଼ ଦ୍ୱାରା ଶାକଦ୍ୱୀପରୁ ଭାରତବର୍ଷକୁ ଅଠଜଣ ମୁନିପୁତ୍ରଙ୍କୁ ଆଣାଇ ଥିଲେ ।

"ବରଦଃ ସୋମ ଈଶାନଃ ଶାନ୍ତଃ ଶୁକ୍ରୋ ଧନଞ୍ଜୟଃ ।
ଦନ୍ତୁର୍ବସୁନ୍ଧରଶ୍ଚୈବ ଇତ୍ୟଷ୍ଟୌ ଗ୍ରହବ୍ରାହ୍ମଣାଃ ॥" (ସାମ୍ବପୁରାଣ)

ଅର୍ଥ ।—ବରଦ, ସୋମ, ଈଶାନ, ଶାନ୍ତ, ଭୃଗୁ, ଧନଞ୍ଜୟ, ଦନ୍ତୁ ଓ ବସୁନ୍ଧର ଏହି ଅଠଜଣ ଗ୍ରହବ୍ରାହ୍ମଣ । ଏହି ଅଠଜଣଙ୍କ ଭିନ୍ନ ଭିନ୍ନ ଗୋତ୍ର ;—

"ବରଦଃ କାଶ୍ୟପଶ୍ଚୈବ ସୋମସ୍ତୁ ଘୃତକୌଶିକଃ ।
ଈଶାନୋ ଗୌତମଶ୍ଚୈବ ଶାନ୍ତଃ କାଶ୍ୟପସ୍ତଥୈବ ଚ ।
ଭରଦ୍ୱାଜୋ ଭୃଗୁଶ୍ଚୈବ ପରାଶରେ ଧନଞ୍ଜୟଃ ।
ଦନ୍ତୁ ଶାଣ୍ଡିଲ୍ୟଗୋତ୍ରଃ ସ୍ୟାତ୍ ମୌଦ୍ଗଲ୍ୟସ୍ତୁ ବସୁନ୍ଧରଃ ।
( ସାମ୍ବପୁରାଣ । )

ଅର୍ଥ ।—ବଶିଷ୍ଠ କାଶ୍ୟପଗୋତ୍ର, ସୋମ ଧୃତକୌଶିକ ଗୋତ୍ର, ଈଶାନ ଗୌତମଗୋତ୍ର, ଶାନ୍ତ ବାତ୍ସ୍ୟଗୋତ୍ର, ଭୃଗୁ ଭରଦ୍ୱାଜଗୋତ୍ର, ଧନଞ୍ଜୟ ପରାଶରଗୋତ୍ର, ଦନୁ ଶାଣ୍ଡିଲ୍ୟଗୋତ୍ର ଏବଂ ବସୁନ୍ଧର ମୌଦ୍ଗଲ୍ୟ ଗୋତ୍ରୀ ଥିଲେ । ସାମବେଦରେ ମଧ୍ୟ ଏହିପରି ଉଲ୍ଲେଖ ଅଛି । )

ଉପରୋକ୍ତ ଅଠଜଣ ଗ୍ରହବିପ୍ରଙ୍କୁ ସାମ୍ବ ନିମ୍ନଲିଖିତମତେ ଗ୍ରହଦାନ ପ୍ରଦାନ କରିଥିଲେ ;—

ସୂର୍ଯ୍ୟାଦତ୍ତୋ ବଶିଷ୍ଠସ୍ତୁ  ସୋମେ ସୋମସ୍ତଥୈବ ଚ ।
ଈଶାନୋ ଭୂମିପୁତ୍ରେ ଚ  ଶାନ୍ତସ୍ତୁ ଶଶିନନ୍ଦନେ ।
ଶୁକ୍ରସ୍ତୁ ଶୁକ୍ରଦାନେ ଯାତ୍ର  ସୂର୍ଯ୍ୟପୁତ୍ରେ ଧନଞ୍ଜୟଃ ।
ରାହୁଦାନେ ଦନୁଶ୍ଚୈବ  କେତୁଦାନେ ବସୁନ୍ଧରଃ ।

ଅର୍ଥ ।—ବଶିଷ୍ଠ ରବି ଓ ବୃହସ୍ପତିଙ୍କର, ସୋମ ଚନ୍ଦ୍ରଙ୍କର, ଈଶାନ ମଙ୍ଗଳଙ୍କର, ଶାନ୍ତ ବୁଧଙ୍କର, ଭୃଗୁ ଶୁକ୍ରଙ୍କର, ଧନଞ୍ଜୟ ଶନିଙ୍କର, ଦନୁ ରାହୁ ଏବଂ ବସୁନ୍ଧର କେତୁଙ୍କର ଦାନ ଗ୍ରହଣ କରିଥିଲେ ।

ଖ୍ରୀଃ ପୂଃ ୬ଷ୍ଠ ଶତାବ୍ଦୀର ଗ୍ରୀକ ପଣ୍ଡିତ ଜାନଥୋସଙ୍କ ମତେ ୪୩୦୬ ବର୍ଷ ପୂର୍ବେ ଜରଥୁସ୍ତ୍ର ଅବତୀର୍ଣ୍ଣ ହୁଅନ୍ତି । ଜରଥୁସ୍ତ୍ର ଯେତେବେଳେ ଶାକଦ୍ୱୀପରେ ମଜ୍ଦ-ଧର୍ମ ପ୍ରଚାର କରନ୍ତି, ସେତେବେଳେ ଭାରତରେ ଶ୍ରୀକୃଷ୍ଣ ଗୀତାଧର୍ମ ପ୍ରଚାର କରିଥିଲେ । ରାଜତରଙ୍ଗିଣୀ ଓ ବୃହତ୍‌ସଂହିତା ମତେ ୨୩୪୯ ବର୍ଷ ପୂର୍ବେ କୁରୁ ପାଣ୍ଡବର ଯୁଦ୍ଧ ହୋଇଥିଲା । ଉକ୍ତ ବିବରଣୀରୁ ମୋଟାମୁଟି ବୁଝିବାକୁ ଗଲେ ପ୍ରାୟ ୪୦୦୦ ବର୍ଷ ହେଲା ଶାକଦ୍ୱୀପୀ ବ୍ରାହ୍ମଣମାନେ ମୂଳତାନରୁ ଆଗମନ କରନ୍ତି । ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କର ଭାରତାଗମନ ବିଷୟ ସାମ୍ବପୁରାଣରେ ବିସ୍ତୃତ ବର୍ଣ୍ଣିତ ହୋଇଅଛି ।

# ଚତୁର୍ଥ ଅଧ୍ୟାୟ ।

## ଭାରତରେ ଶାକଦ୍ୱୀପୀ ବ୍ରାହ୍ମଣ ।

ବେଦ ପୁରାଣାଦିରେ ଦେଖାଯାଏ, ସୃଷ୍ଟିର ଉତ୍ପତ୍ତି ସମୟରୁ ଭଦ୍ରବ୍ରାହ୍ମଣମାନେ ସୃଷ୍ଟ ହୋଇଅଛନ୍ତି । ବ୍ରାହ୍ମଣମାନେ ସମସ୍ତେ ସୂର୍ଯ୍ୟୋପାସକ, ଶାକଦ୍ୱୀପରେ ସୂର୍ଯ୍ୟ ଏକମାତ୍ର ଉପାସ୍ୟ ଦେବତା । ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କ ଦ୍ୱାରା ଭାରତରେ ଅନେକ ସୂର୍ଯ୍ୟମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛି । ମୂଲତାନରେ ଶାକଦ୍ୱୀପୀ ବ୍ରାହ୍ମଣଙ୍କର ଅତି ଉପନିବେଶ ହେଲେହେଁ ପଞ୍ଜାବ ଅନ୍ତର୍ଗତ ଶାକଳ ନାମକ ସ୍ଥାନରେ ବହୁପୂର୍ବକାଳରୁ ସେମାନେ ବାସସ୍ଥାପନ କରିଥିଲେ । ପୂର୍ବକାଳରେ ଜାତି ଅନୁସାରେ ଜନପଦ ସମୂହ କଥିତ ହୋଇଅଛି । ଶାକଦ୍ୱୀପୀ ବ୍ରାହ୍ମଣଙ୍କର ବାସ ହେତୁରୁ ସେହିସ୍ଥାନ ଶାକଳ ନାମରେ ପରିଚିତ ହୋଇଅଛି । ଅଦ୍ୟାପି ଅନେକ ଶାକଦ୍ୱୀପୀ ବ୍ରାହ୍ମଣମାନେ ନିଜକୁ "ଶାକଳଦ୍ୱିଜ" ବୋଲି ପରିଚୟ ଦିଅନ୍ତି । ଏଥିରୁ ଜଣାଯାଉଅଛି ଯେ, ଅତି ପ୍ରାଚୀନ କାଳରୁ ଭାରତବର୍ଷରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ବାସ କରୁଥିଲେ ଏବଂ ଭାରତର ନାନାସ୍ଥାନରେ ଭଦବପ୍ରମାନେ ଭିନ୍ନ ଭିନ୍ନ ନାମ ଧାରଣ କରୁଥିଲେ, ଯଥା ;—

"ଶକଦ୍ୱୀପେ ଚ ବେଦାଗ୍ନିଃ ଶାକଦ୍ୱୀପେ ଚ ସିଦ୍ଧକଃ ।
ଭୂମଧ୍ୟେଚ ବହ୍ନିଗୃସ ଦୈବଜ୍ଞୋ ଦ୍ୱାରକାପୁରେ ।
ଦ୍ରାବଡ଼େ ମୈଥିଲେ ଚୈବ ଗ୍ରହବିପ୍ରେତି ସଜ୍ଞିକଃ ।
ଧର୍ମାଙ୍ଗେ ଧର୍ମବକ୍ତାଚ ପାଞ୍ଚାଳେ ଶାସ୍ତ୍ର ସଜ୍ଞକଃ ।
ସାରସ୍ୱତେ ଶୁଭମୂର୍ଖୋ ଚାମ୍ପାରେ ଚନ୍ଦ୍ରପଣ୍ଡିତଃ ।

ଷ୍ଟରହୋତ୍ରେ ତୁ ତଥା  ବନ୍ଧାଟକେ ବେଦପାଠକାଃ ।
ରୁଦ୍ରାଳେ ଜ୍ୟୋତିଷିବିପ୍ରୋ  ବ୍ରହ୍ମଳେ ବିଧିକାରକଃ ।
ବରାଟେ ଯୋଗବେତ୍ତା ଚ  ନେଷ୍ଟାଳେ ଦେବପୂଜକଃ ।
ରାଢ଼ଦେଶେ ଉପାଧ୍ୟାୟୋ • ଗଯ୍ୟାସ୍ତୁଂ ତନ୍ତ୍ରଧାରକଃ ।
କଳିଙ୍ଗେ ଜ୍ଞାନବିପ୍ରଃ ସ୍ୟାତ୍ ଅଗ୍ରଦୈପ୍ୟୋ ଗୌଡ଼ଦେଶକେ ।

(ବ୍ରହ୍ମଯାମଳ ୧୯ଶ ପଟଳ ।)

ଅର୍ଥ ।—ଶରଦ୍ୱୀପରେ ବେଦାଗ୍ନି, ଶାକଦ୍ୱୀପରେ ସିଦ୍ଧକ, ଭୂମଧ୍ୟେ ବ୍ରହ୍ମଜ୍ଞ, ଦ୍ୱାରକାପୁରରେ ଦୈବଜ୍ଞ, ଦ୍ରାବିଡ଼ ଓ ମୈଥି-ଳରେ ଗ୍ରହବିପ୍ର, ଧର୍ମାଙ୍ଗରେ ଧର୍ମବକ୍ତା, ପାଞ୍ଚାଳରେ ଶାସ୍ତ୍ରୀ, ମାରସ୍ୱତପ୍ରଦେଶରେ ଗୁରୁମୁଖ୍ୟ, ଗାନ୍ଧାରରେ ଚତୁଷ୍ପଣ୍ଡିତ, ହିନ୍ଦୁ-ତରେ ତଥିବହ, ନାଟକାଚଳ (କାମରୂପ)ରେ ବେଦପାଠକ; ରୁଦ୍ରାଳୟରେ ଜ୍ୟୋତିଷୀ, ବ୍ରହ୍ମଦେଶରେ ବିଧିକାରକ, ବରାଟରେ ଯୋଗବେତ୍ତା, ନେଷ୍ଟାଳରେ ଦେବପୂଜକ, ରାଢ଼-ଦେଶରେ ଉପାଧ୍ୟାୟ, ଗଯ୍ୟାରେ ତନ୍ତ୍ରଧାରକ, କଳିଙ୍ଗରେ ଜ୍ଞାନବିପ୍ର ଏବଂ ଗୌଡ଼ଦେଶରେ ଅଗ୍ରଦୀପୀ ନାମରେ ବିଖ୍ୟାତ ।

ଏଥିରୁ ଜଣାପଡୁଅଛି ଯେ, ଅତି ପ୍ରାଚୀନ କାଳରୁ ଗ୍ରହବିପ୍ରମାନେ ଭାରତରେ ବାସ କରୁଥିଲେ । ଏତଦ୍ ଅଞ୍ଚଳର ବେଟେକାଂଶ ଗୌଡ଼ଦେଶ ବୋଲି କହନ୍ତି ଏବଂ ଏଦେଶୀୟ ଗ୍ରହବିପ୍ରମାନେ "ଅଗ୍ରଦୀପୀ ବା ଗ୍ରହାଗ୍ରଦୀପୀ" ନାମରେ ପରିଚିତ । ଭାରତବର୍ଷର ୭୦ ଗୋଟି ସ୍ଥାନରେ ଗ୍ରହବିପ୍ରମାନଙ୍କର ବାସସ୍ଥାନ ଥିଲା, ଏହା ରଘୁନାଥ ମିଶ୍ର ବିରଚିତ "ଦୈବ୍ୟାଜନ ଚନ୍ଦ୍ରୋଦୟ" ଗ୍ରନ୍ଥରେ ଉଲ୍ଲେଖ ହୋଇଅଛି । ଏପର କୃଷ୍ଣଦାସ ମିଶ୍ର ପ୍ରଣୀତ "ମଗବ୍ୟକ୍ତ" ଗ୍ରନ୍ଥରେ ୫୪ ଗୋଟି ଗ୍ରାମରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ପୂଜନୀୟ ଥିଲେ, ଯଥା ;—

“[illegible] ଜମ୍ବୁଦ୍ୱୀପ ମଦୈଃ ସହ ।
ପ୍ରଖ୍ୟାତା ଦ୍ୱାଦଶାଦିତ୍ୟା ମଣ୍ଡଳା ଦ୍ୱାଦଶୋତ୍ତମାଃ ।
ସପ୍ତାର୍କା ବହୁଶୋ ଯେଽନ୍ୟେ କଥ୍ୟନ୍ତେ ସ୍ୱର୍ଗମୋକ୍ଷଦାଃ ।’

ଅର୍ଥ ।—୨୪ ଅଗ୍ର, ୧୨ ଆଦିତ୍ୟ, ୧୨ ମଣ୍ଡଳ ଏବଂ ୭ ଅର୍କ ; ଏହି ୫୫ ଗୋଟି ସ୍ଥାନରେ ଶାକଦ୍ୱୀପୀ ବ୍ରାହ୍ମଣ-ମାନଙ୍କର ବସତି ଥିଲା ।

ବାହୁଲ୍ୟ ହେତୁରୁ ଅଗ୍ର, ଆଦିତ୍ୟାଦି ସ୍ଥାନର ନାମ ଉଲ୍ଲେଖ ନ କରି, ନିମ୍ନରେ କେବଳ ସପ୍ତାର୍କ ଉଦ୍ଧୃତ କଲୁଁ ।

“ଉଷ୍ଣଃ ପୁଣ୍ଡ୍ରୋ ମାର୍କଣ୍ଡେୟୋ ବାଲ୍କେ ଲୋକଃ କୋଣସ୍ତନଃ ।
ଶାକଦ୍ୱୀପୀ ଯୌଣୀ ଦେବୈଃ ସପ୍ତାବନ୍ୟାଂ ପ୍ରକ୍ୟାସ୍ତାର୍କାଃ ।”
( “ମଗବ୍ୟକ୍ତି” ଗ୍ରନ୍ଥ । )

ଅର୍ଥ ।—ଉଷ୍ଣାର୍କ, ପୁଣ୍ଡ୍ରାର୍କ, ମାର୍କଣ୍ଡେୟାର୍କ, ବାଲ୍ଲାର୍କ, ଲୋଲାର୍କ, କୋଣାର୍କ ଓ ଚନାର୍କ ; ଏହି ସପ୍ତାର୍କରେ ଶାକଦ୍ୱୀପୀ ବ୍ରାହ୍ମଣ-ମାନେ ରାଜାମାନଙ୍କ ନିକଟରେ ଅତିଶୟ ପୂଜନୀୟ ଥିଲେ ।

ଏହିସବୁ ସ୍ଥାନ ପ୍ରତ୍ନତତ୍ତ୍ୱାନୁସନ୍ଧାନକାରୀ ମହୋଦୟମାନେ ଯାହା ନିର୍ଦ୍ଦେଶ କରିଅଛନ୍ତି ତାହା ଉଲ୍ଲେଖ କରିଗଲୁ ;—ଉଷ୍ଣ ବର୍ତ୍ତମାନ ଉଷ୍ଣ ହାଇଦରାବାଦ, ପୁଣ୍ଡ୍ର ଗୌଡ଼ଦେଶର ରାଜଧାନୀ ପୌଣ୍ଡ୍ର ବର୍ଦ୍ଧନ ନାମକ ପ୍ରସିଦ୍ଧ ସ୍ଥାନ ; ମାର୍କଣ୍ଡେୟ ବର୍ତ୍ତମାନ ଦେଓ ମାର୍କଣ୍ଡ ସାହାବାଦ ଜିଲ୍ଲା ; ଲୋଲାର୍କ କାଶୀଖଣ୍ଡରେ ଉଲ୍ଲିଖିତ କାଶୀସ୍ଥିତ ପ୍ରାଚୀନ ସୂର୍ଯ୍ୟମନ୍ଦିର ପୂଜକମାନେ ଲୋଲାର୍କ ନାମରେ ବିଖ୍ୟାତ ଏବଂ କୋଣାର୍କ ବର୍ତ୍ତମାନ କଣରକ ଏହା ଓଡ଼ିଶା ମଧ୍ୟରେ ରହିଅଛି ।

ଏଥିରୁ ଜଣାଯାଉଅଛି ଯେ, ଓଡ଼ିଶାରେ ଅନେକ ଦିନରୁ ଛହବିପ୍ରମାନଙ୍କର ବାସସ୍ଥାନ ଥିଲା । ବର୍ତ୍ତମାନ ମଧ୍ୟ ଓଡ଼ିଶାର

ଭବିଷ୍ୟ ସ୍ଥାନରେ ତଥା ବାଲେଶ୍ୱର ଜିଲ୍ଲାରେ ଗ୍ରହବିପ୍ରମାନଙ୍କର ଅବାସଭୂମି ରହିଅଛି । ( ୧୩ଶ ଅଧ୍ୟାୟ ଦ୍ରଷ୍ଟବ୍ୟ । )

ପ୍ରାଚୀନ ପାଲିଗ୍ରନ୍ଥରେ ଦେଖାଯାଏ, ବୁଦ୍ଧଦେବଙ୍କ ସମୟରେ ଶାକଦ୍ୱୀପୀ ବା ଗ୍ରହବ୍ରାହ୍ମଣମାନେ ଭାରତରେ ବିଶେଷ ପ୍ରବଳ ଥିଲେ । ବୁଦ୍ଧଦେବ ଜନ୍ମିବା ସମୟରେ ତାଙ୍କର କୋଷ୍ଠି ଦେଖି ଜ୍ୟୋତିର୍ବିଦ୍‌ମାନେ ଶୁଭାଶୁଭ ନିର୍ଣ୍ଣୟ କରିଥିଲେ (୧) । ଗୁପ୍ତସମ୍ରାଟ୍ ବାଲାଦିତ୍ୟ ମଗଧର "ମିତ୍ର" ଉପାଧିଧାରୀ ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କୁ ସମ୍ମାନିତ କରୁଥିଲେ ଓ ସୂର୍ଯ୍ୟ ସେବାର୍ଥ ଭୂମି-ଦାନ କରିଥିଲେ (୨) । ବରାହମିହିରଙ୍କ ସମୟରେ ସୂର୍ଯ୍ୟପୂଜା ଏକମାତ୍ର ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କର ଅଧିକାର ଥିଲା । ଏପରି ୧୦ମ ଶତାବ୍ଦୀରେ ଭାରତରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ସୂର୍ଯ୍ୟପୂଜା କରୁଥିବାର ଅଲ୍‌ବିରୁଣୀ ଦେଖିଯାଇଥିଲେ (୩) । ଖ୍ରୀଃ ୭ମ ଶତାବ୍ଦୀରେ ଚୀନ-ପରିବ୍ରାଜକ ହିଉ, ଏନ, ସିଆଂ (ହୋଏନ୍‌ସାଂ) ମୂଲତାନ ନଗରରେ ସୁବର୍ଣ୍ଣମୟୀ ସୂର୍ଯ୍ୟମୂର୍ତ୍ତି ଦେଖି ଯାଇଥିଲେ (୪) । "ଶାକଲଦ୍ୱୀପ ବା ଶାକଳାଦୀପ" ଚନ୍ଦ୍ରଗୁପ୍ତ ଜନ୍ମ ହେବା ଖ୍ରୀଃ ପୂଃ ୬୦୦ ଶତ ବର୍ଷ ପୂର୍ବରେ

(୧) ଅର୍ଥବଶାବଳୀ, ବୌଦ୍ଧଯୁଗର କାବ୍ୟ ।

(୨) Fleets' Inscriptions of the Gupta Kings, Vol. III, p, 217.

(୩) Ali Bareeni's India translated by E. Sachau, Vol. I. p. 121,

(୪) Journal Asiatique (Paris) 1887. Tome X. p, 70 and Cunningham's Ancient Geography of India, p, 233.

ଗୌଡ଼ନଗର ପ୍ରତିଷ୍ଠା କରନ୍ତି (୧) । ସେହିଦିନଠାରୁ ଗୌଡ଼-ଦେଶ ବୋଲି ବିଖ୍ୟାତ ହୋଇ ଆସୁଅଛି । ଗୌଡ଼ ରାଜାଙ୍କ ସଭାରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ପୂଜ୍ୟ ଥିଲେ । ସୁତରାଂ ଏହିସବୁ ଐତିହାସିକ ପ୍ରମାଣ ଦ୍ୱାରା ବୁଝାଗଲା ଯେ, ପ୍ରାଚୀନ କାଳରୁ ଗ୍ରହବିପ୍ରମାନେ ଭାରତର ନାନାସ୍ଥାନରେ ବାସ କରୁ-ଥିଲେ ଏବଂ ରାଜସଭାରେ ପୂଜ୍ୟ ବ୍ୟକ୍ତି ଥିଲେ । (ଏପର ଶାସ୍ତ୍ରାନ୍ତରରେ ସ୍ୱୀକୃତ କରିବା ଅବଶ୍ୟକ ।)

ଦେବର୍ଷି ନାରଦ ଯୁଧିଷ୍ଠିରଙ୍କ ରାଜସଭାରେ ଆଗମନ କରି ରାଜ୍ୟସଂକ୍ରାନ୍ତ ନାନାବିଧ ଶୁଭାଶୁଭ ପ୍ରଶ୍ନ କଥୋପକଥନରେ କହିଥିଲେ "ହେ ମହାରାଜ ! ତୁମ୍ଭ ରାଜ୍ୟରେ ଦୈବଜ୍ଞମାନେ ପୂଜିତ ହୁଅନ୍ତି ତ ?" ଦୈବଜ୍ଞମାନେ ରାଜପୂଜ୍ୟ ନ ଥିଲେ ଦେବର୍ଷି ନାରଦ ଏପରି ପ୍ରଶ୍ନ କରନ୍ତେ ନାହିଁ । ସୁତରାଂ ଗ୍ରହବିପ୍ରମାନେ ରାଜପୂଜ୍ୟ ଥିବାରୁ ଉଲ୍ଲିଖିତ ପ୍ରଶ୍ନ ଉତ୍ଥାପନ କରିଥିଲେ । ଏପର ତ୍ରେତାଯୁଗରେ ରାବଣର ମୃତ୍ୟୁବାଣ ଆଣିବା ସକାଶେ ହନୁମାନ ଦୈବଜ୍ଞ ବେଶରେ ମନ୍ଦୋଦରୀ ନିକଟକୁ ଗମନ କରିଥିଲେ । ମନ୍ଦୋଦରୀ (ହନୁମାନଙ୍କୁ) ଜ୍ୟୋତିର୍ବିଦ୍ ଜାଣି ପାଦ୍ୟ ଅର୍ଘ୍ୟାଦି ଦ୍ୱାରା ପୂଜା କରିଥିଲେ । ଏଥିରୁ ଜଣା-ଯାଉଅଛି ଯେ ବହୁଶତାବ୍ଦୀ ପୂର୍ବେ ଗ୍ରହବିପ୍ରମାନେ ରାଜପୂଜ୍ୟ ଥିଲେ ଏବଂ ରାଜାମାନଙ୍କୁ ପରାମର୍ଶ ଦେଉଥିଲେ ; ରାଜାମାନେ ମଧ୍ୟ ତଦନୁସାରେ ଚଳୁଥିଲେ । ସେହି ଯୁଗରେ ବଷ୍ଟି ଅବତାର

(୧) 'ପେରିପ୍ଲସ ଓ ରମ୍ୱାନ-ଭସ-ସଦନ' ନାମକ ମୁସଲମାନ ଇତିହାସ ଦ୍ରଷ୍ଟବ୍ୟ । ଏହି ଇତିହାସ ଅତିଭ ପ୍ରାଚୀନ ପ୍ରମାଣ ଦ୍ୱାରା ଜଣାଯାଏ ଯେ, ଗୌଡ଼ରାଜଙ୍କ ସଭାରେ ପ୍ରଥମେ ସୂର୍ଯ୍ୟମୂର୍ତ୍ତି ଏବଂ ପରେ ଅପରାପର ଦେବାଦେବୀର ମୂର୍ତ୍ତି ପୂଜା ଏମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ହୁଏ ।

ଶ୍ରୀରାମଚନ୍ଦ୍ରଙ୍କର ପିତା ଦଶରଥଙ୍କୁ କୌଣସି ସମୟରେ ଶନିଗ୍ରହ ରୋହିଣୀ ନକ୍ଷତ୍ରରେ ଗମନ ହେବାରୁ ଅଯୋଧ୍ୟାରେ ଅନାବୃଷ୍ଟି ହୁଏ । ଉକ୍ତ ରାଜ୍ୟର ଜ୍ୟୋତିର୍ବିଦ୍‌ମାନେ ଅନାବୃଷ୍ଟିର କାରଣ ଜାଣିପାରି ରାଜାଧିରାଜ ଦଶରଥଙ୍କୁ ଜ୍ଞାପନ କରିଥିଲେ । ରାଜା ଦଶରଥଙ୍କ କୃତ ଶନିସ୍ତବରେ ଲେଖାଅଛି ;—

"ରଘୁବଂଶେଷୁ ବିଖ୍ୟାତୋ ରାଜା ଦଶରଥଃ ପୁରା ।
ଚକ୍ରବର୍ତ୍ତୀ ସ ବିଜ୍ଞେୟଃ ସପ୍ତଦ୍ୱୀପାଧିପୋଽଭବେତ୍ ।
କୃତ୍ତିକାନ୍ତେ ଶନିଂ ଜ୍ଞାତ୍ୱା ଦୈବଜ୍ଞୈର୍ଜ୍ଞାପିତୋହିସଃ ।
ରୋହିଣୀଂ ଭେଦୟିତ୍ୱା ତୁ ଶନିର୍ଯ୍ୟାସ୍ୟତି ସାମ୍ପ୍ରତମ୍ ।
( ସ୍କନ୍ଦପୁରାଣ । )

"ଉତ୍କଳଖଣ୍ଡ"ରେ ଲେଖାଅଛି ଯେ, ସତ୍ୟଯୁଗରେ ଇନ୍ଦ୍ରଦ୍ୟୁମ୍ନ ନାମକ ସୂର୍ଯ୍ୟବଂଶୀୟ ରାଜା ଏକ ସମୟରେ ଗ୍ରହଦୋଷରୁ ଅସୁସ୍ଥ ହୋଇଥିଲେ । ଇନ୍ଦ୍ରଦ୍ୟୁମ୍ନ ରାଜା ଉତ୍କଳ ପ୍ରଦେଶର ଦୈବଜ୍ଞଙ୍କୁ ପୁରୋହିତରୂପେ ବରଣ କରି ଗ୍ରହଯାଗ (ବା ଗ୍ରହଶାନ୍ତି) କରାଇବାରୁ ସୁସ୍ଥତା ଲାଭ କରିଥିଲେ । ( ପ୍ରମାଣାଦି ୧୬ଶ ଅଧ୍ୟାୟରେ ପ୍ରଦତ୍ତ ହୋଇଅଛି । )

ଉପରୋକ୍ତ ବିଷୟମାନଙ୍କରୁ ଉପଲବ୍ଧି ହେଉଅଛି ଯେ, ଯୁଗାନୁକ୍ରମେ ଭାରତର ନାନା ଅଂଶରେ, ଲଙ୍କାଦ୍ୱୀପ ତଥା ଓଡ଼ିଶାରେ ତେଜସ୍ୱୀ ଜ୍ୟୋତିର୍ବିଦ୍—ଗ୍ରହବିପ୍ରମାନେ ବାସ କରିଥିଲେ । ଏପରି ଅଧିକ ବୋଲିବା ବାହୁଲ୍ୟ ମାତ୍ର ।



# ପଞ୍ଚମ ଅଧ୍ୟାୟ ।

—•※•—

## ଅଗ୍ରର୍ଯ୍ୟ ବ୍ରାହ୍ମଣର ଉପାଧି ।

"ସାମନ୍ତଶ୍ଚ ଜ୍ୟୋତିଷିକୋ ଦୈବଜ୍ଞୋ ଗଣକୋଽପି ଚ ।
ଭଟ୍ଟବିପ୍ରୋ ଦ୍ୱିଜଶ୍ରେଷ୍ଠଃ ସର୍ବଶାସ୍ତ୍ରବିଶାରଦଃ ।
ଅଗ୍ରର୍ଯ୍ୟୋ ବ୍ରାହ୍ମଣେନ୍ଦ୍ରଶ୍ଚ ପାଠକଃ ସାମବେଦକଃ ।
ସୁଖୀ ଶାଖୀ ବରେଣ୍ୟୋଽଗ୍ନିଃ ଷଟ୍‌କର୍ମା ତତ୍ତ୍ୱଭୂଷଣଃ ।
ମୌଦ୍‌ବୃତ୍ତିକଶ୍ଚ ମୌଦ୍‌ବର୍ତ୍ତୋ ଜ୍ଞାନୀ କାର୍ତ୍ତିକେୟୋଽପି ଚ ।
ଭଦ୍ରାଂଶ ବ୍ରାହ୍ମଣା ଏତେ ବ୍ରହ୍ମନାମୈବ ବଂଶଜାଃ । (ବ୍ରହ୍ମସିଦ୍ଧାନ୍ତ)

ଅର୍ଥ ।—ସାମନ୍ତର, ଜ୍ୟୋତିଷିକ, ଦୈବଜ୍ଞ, ଗଣକ, ଭଟ୍ଟବିପ୍ର, ଦ୍ୱିଜଶ୍ରେଷ୍ଠ, ସର୍ବଶାସ୍ତ୍ରବିଶାରଦ, ଅଗ୍ରର୍ଯ୍ୟ, ବ୍ରାହ୍ମଣେନ୍ଦ୍ର, ପାଠକ, ସାମବେଦକ, ସୁଖୀ, ଶାଖୀ, ବରେଣ୍ୟ, ଅଗ୍ନି, ଷଟ୍‌କର୍ମା, ତତ୍ତ୍ୱଭୂଷଣ, ମୌଦ୍‌ବୃତ୍ତିକ, ମୌଦ୍‌ବର୍ତ୍ତ, ଜ୍ଞାନୀ ଓ କାର୍ତ୍ତିକେୟ ; ଭଦ୍ରାଂଶ ବ୍ରାହ୍ମଣଙ୍କର ଏହି ଏକୋଇଶ ପ୍ରକାର ଉପାଧି ପ୍ରଚଳିତ ଅଛି । ଏହାଛଡ଼ା ଦେଶଭେଦରେ ଅନେକ ଉପାଧି ପ୍ରଚଳିତ ହୋଇଅଛି ।

ଏ ଦେଶରେ ଭଟ୍ଟବିପ୍ରମାନଙ୍କୁ ନ୍ୟାୟରତ୍ନ, ଭଟ୍ଟାଗ୍ରର୍ଯ୍ୟ, ଅଗ୍ରର୍ଯ୍ୟ, ମହାପାତ୍ର, ଉପାଧ୍ୟାୟ, ଦୈବଜ୍ଞ ଓ ପଣ୍ଡିତ ଆଦି ନାନାପ୍ରକାର ଉଚ୍ଚଉପାଧି ଦ୍ୱାରା ସମ୍ମାନିତ କରନ୍ତି ।

କେହି କହନ୍ତି ଯେ "ଅଗ୍ରର୍ଯ୍ୟ" ବ୍ରାହ୍ମଣ ଜାତର ଉପାଧି, ତତ୍‌ପ୍ର ଜାତରେ ବର୍ଣ୍ଣିତ ହୋଇ ପାରେନାହିଁ । ସୁତରାଂ ସାଧାରଣଙ୍କ ବୋଧାର୍ଥେ ଅଗ୍ରର୍ଯ୍ୟ ଶବ୍ଦର ଅର୍ଥ ନିମ୍ନରେ ପ୍ରଦତ୍ତ ହେଲା ।

ଅଗ୍ରର୍ଯ୍ୟ—ଅଗ୍ର୍ ପୂର୍ବକାରୁ ଚର୍ ଧାତୋର୍ଣ୍ଣ୍ୟହ ପ୍ରତ୍ୟୟ କରି "ଅଗ୍ରର୍ଯ୍ୟ" ଏହି ପଦଟି ନିଷ୍ପନ୍ନ ହୁଏ । ଚର୍ ଧାତୁର ଅର୍ଥ 'ଚର ଗତୌ

ଭକ୍ଷଣେ ଚ ଅର୍ଥାତ୍ ଚର୍ ଧାତୁର ଅର୍ଥ ଗତି ବା ଭକ୍ଷଣ ବୁଝାଏ । ଶବ୍ଦ-କଳ୍ପଦ୍ରୁମରେ ଲେଖାଅଛି "ଗତୌ ଅଦନେ ଚ" ଅର୍ଥାତ୍ ଭୋଜନରେ ଓ ଅଗ୍ରସରରେ । ଗତି ଶବ୍ଦର—ଯାତ୍ରା, ଦଶା, ଅବସ୍ଥା, ପଥ, ଉପାୟ, ଜ୍ଞାନ ଇତ୍ୟାଦି ; ଭକ୍ଷଣ ଶବ୍ଦରେ ଖାଇବା ବୁଝାଏ । ଏଥିରୁ ଜଣାଯାଉଅଛି ଯେ, ଯାହାଦ୍ୱାରା ଆମ୍ଭମାନଙ୍କର ଶରୀର ରକ୍ଷାର୍ଥେ ଆହାର, ବୋଧ, ଗମନ, ପଥ, ଦଶା, ଉପାୟ ପ୍ରଭୃତି ବିଷୟ ଶିକ୍ଷା ପାଇବାକୁ ହୁଏ; ସେ ବ୍ୟକ୍ତି ଆଚାର୍ଯ୍ୟ । ଅତଏବ ଆଚାର୍ଯ୍ୟ ଶବ୍ଦକୁ ଅନ୍ୟ କୌଣସି ଶବ୍ଦ ପରେ ବ୍ୟବହାର ହେଲେ ଭିନ୍ନ ଅର୍ଥ ପ୍ରକାଶ ପାଏ । ଯେପରି ବେଦାଚାର୍ଯ୍ୟ, କୁଳାଚାର୍ଯ୍ୟ, ସାହିତ୍ୟାଚାର୍ଯ୍ୟ ଇତ୍ୟାଦି । କିନ୍ତୁ ଆଚାର୍ଯ୍ୟ ଉପାଧିଟି ଏକମାତ୍ର ଗ୍ରହବିପ୍ର ଜାତିର ଉପାଧି । ଆଚାର୍ଯ୍ୟ ଶବ୍ଦ ଗୁରୁ ଭିନ୍ନ ଅନ୍ୟ କାହାରିକୁ ବୁଝାଏ ନାହିଁ । ଉତ୍କଳ ଜନସାଧାରଣଙ୍କ ହାତରେ ଖଡ଼ି ଦେଇ ବର୍ଣ୍ଣାରମ୍ଭ ଏବଂ ପିଲାମାନଙ୍କୁ ଶିକ୍ଷା ଦେଇ ଆସୁଥିବାରୁ ଶିକ୍ଷକ—ଗୁରୁ—ଆଚାର୍ଯ୍ୟ ବୋଲି ପରିଚିତ । ସୁତରାଂ ଗ୍ରହବିପ୍ର ଜାତି ଅତି ପ୍ରାଚୀନ କାଳରୁ ଗୁରୁକାର୍ଯ୍ୟର ପଥପ୍ରଦର୍ଶକ । ଗର୍ଭାଧାନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେତେ କାର୍ଯ୍ୟ କଳାପ ଏବଂ ସମସ୍ତ ପୂଜାପର୍ବ ଆଦି ନିଘଣ୍ଟ ବ୍ୟବସ୍ଥା (ପଞ୍ଜିକାରେ ଲିପିବଦ୍ଧ) ଗ୍ରହବିପ୍ରମାନେ ପ୍ରକାଶ କରି ଆସୁଥିବାରୁ ଜନସାଧାରଣଙ୍କ ଜ୍ଞାତବ୍ୟ ବିଷୟ ସୁଶିକ୍ଷା ଲାଭ ହେଉଥିବାରୁ ଏବଂ ସାଧାରଣଙ୍କର ଉପକାର ସାଧନ କରୁଅଛନ୍ତି ବୋଲି ଶାସ୍ତ୍ରକାରମାନେ ଏମାନଙ୍କୁ ଆଚାର୍ଯ୍ୟ ଉପାଧି ପ୍ରଦାନ କରିଅଛନ୍ତି । ଅନେକ ଶାସ୍ତ୍ରରେ ପ୍ରମାଣ ଥିଲେହେଁ ଏଠାରେ କେବଳ ଗୋଟିଏ ପ୍ରମାଣ ଉଦ୍ଧୃତ ହେଲା ।

"ଆଚାର୍ଯ୍ୟସ୍ୟ ମୁଖାଦେତଚ୍ଛାସ୍ତ୍ରଂ ଶୃଣୁୟାଦ୍ବୁଧଃ ।
ସମ୍ପ୍ରଦାୟେନ ଯୋଽଭ୍ରାନ୍ତସ୍ତସ୍ମିନ୍ ଶାସ୍ତ୍ରେ ମହାମତିଃ ।"

( ବୃହତ୍ ପରାଶର ଉତ୍ତରଖଣ୍ଡେ ୧ମ ଅଧ୍ୟାୟ । )

ଅର୍ଥ ।—ଯେଉଁ ଗ୍ରହବିପ୍ରମାନଙ୍କର କୁଳକ୍ରମାନୁସାରେ "ଆଚାର୍ଯ୍ୟ" ଉପାଧି ପ୍ରଚଳିତ, ସେହି ପଣ୍ଡିତମାନଙ୍କଠାରୁ ସୁଧୀ ବ୍ୟକ୍ତିମାନେ ଜ୍ୟୋତିଃଶାସ୍ତ୍ର ଶ୍ରବଣ କରିବେ ।

ଏଥିରୁ ପାଠକେ ବୁଝିବେ ଯେ, ଆଚାର୍ଯ୍ୟ ଉପାଧିଧାରୀ ଗ୍ରହବିପ୍ରଙ୍କଠାରୁ ଜ୍ୟୋତିଷଶାସ୍ତ୍ର ଶ୍ରବଣ କରିବା କର୍ତ୍ତବ୍ୟ ।

ଛତ୍ରବସ୍ତ ଜାତିର ଅଗ୍ରୂର୍ଯ୍ୟ ଉପାଧି ପ୍ରାଚୀନ କାଳରୁ ରହିଅଛି । ଅଗ୍ରୂର୍ଯ୍ୟ କହିଲେ କେବଳ ଛତ୍ରବସ୍ତଙ୍କୁ ବୁଝାଇବ, ଅନ୍ୟ କାହାରିପ୍ରତି ନୁହେଁ । ( ବ୍ରହ୍ମଯାମଳ ଓ ବ୍ରହ୍ମସିଦ୍ଧାନ୍ତ ଗ୍ରନ୍ଥର ୪ର୍ଥ, ୫ମ ଅଧ୍ୟାୟରେ ବିଶେଷ ବର୍ଣ୍ଣିତ ହୋଇଅଛି । )

ନ୍ୟାୟିକ ।— ନ୍ୟାୟଂ ଶାସ୍ତ୍ରଂ ବେଦେତି ବା ଧୀତ ଠ ପ୍ରତ୍ୟୟ । ଅର୍ଥାତ୍ ଯେଉଁ ବ୍ୟକ୍ତି ନ୍ୟାୟଶାସ୍ତ୍ର ଅବଗତ ଅଛନ୍ତି ଏବଂ ସେ ସମ୍ବନ୍ଧରେ ଯେଉଁମାନେ ଆଲୋଚନା କରନ୍ତି, ସେମାନଙ୍କୁ ନ୍ୟାୟିକ କହାଯାଏ । ନ୍ୟାୟିକ ଛତ୍ରବସ୍ତକୁଳର ଉପାଧି ଅଟେ । ଜ୍ୟୋତିଃଶାସ୍ତ୍ର ସୂକ୍ଷ୍ମରୂପରେ ସ୍ଥିର କରିବାକୁ ହେଲେ ନ୍ୟାୟଶାସ୍ତ୍ର ପଢ଼ିବାକୁ ହୁଏ । କାରଣ, 'ଶିବୋକ୍ତ ପଞ୍ଚପକ୍ଷୀ' ଗ୍ରନ୍ଥର ୨୬ଶ ବଚନ ସ୍ଥଳେ ଅବକାଶଚକ୍ର ବିଷୟ ଟୀକାରେ ଲେଖାଅଛି :—

"ଘଟାକାଶପଟାକାଶଭେଦେନ ହୃତକାଷ୍ଠଚନ୍ଦ୍ରତଦ୍‌ବ୍ୟାକାମାନୁତକ୍ଷଣାର୍ଥଂ ପ୍ରୟୋଜନାନ୍ତ ଏତତ୍ ପ୍ରୟୋଜନଂ ।"

ଘଟାକାଶ ଓ ପଟାକାଶ କାହାକୁ କୁହନ୍ତି ଏବଂ ତାହା କି ପ୍ରକାର ହୁଏ, ତାହା ନ୍ୟାୟଶାସ୍ତ୍ର ଜଣା ନ ଥିଲେ ଉକ୍ତ ବିଷୟ ଠିକ୍ ବୁଝାଯାଏ ନାହିଁ । ଏହି କାରଣରୁ ଜ୍ୟୋତିର୍ବିଦ୍‌ମାନେ ନ୍ୟାୟଶାସ୍ତ୍ର ପଢ଼ିଥାନ୍ତି ।

ସୁତରାଂ ଏ ନଗରର ଛତ୍ରବସ୍ତମାନଙ୍କର କୁଳକ୍ରମାନୁସାରେ "ନ୍ୟାୟିକ" ଉପାଧି ପ୍ରବର୍ତ୍ତିତ ହୋଇ ଆସୁଅଛି । ( ପାଠକମାନଙ୍କର ପ୍ରତ୍ୟେକ ଉପାଧିର ଅର୍ଥ ଜାଣିବାର ଆବଶ୍ୟକ ହେଲେ "ଅଗ୍ରୂର୍ଯ୍ୟ ବ୍ରାହ୍ମଣ" ନାମକ ପୁସ୍ତକର ୧୫ଶ ଅଧ୍ୟାୟ ଦ୍ରଷ୍ଟବ୍ୟ । )



# ଷଷ୍ଠ ଅଧ୍ୟାୟ ।

—•※•—

## ଛତ୍ରବିପ୍ର ଜାତିର ସଂସ୍କାର ।

"ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରୈର୍ଦ୍ୱିଜ ଉଚ୍ୟତେ ।
ବେଦାଭ୍ୟାସେ ଭବେଦ୍ୱିପ୍ରୋ ବ୍ରହ୍ମ ଜାନାତି ବ୍ରାହ୍ମଣଃ ।"

(ମନୁସଂହିତା ।)

ଅର୍ଥ ।—ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରି ଯେପର୍ଯ୍ୟନ୍ତ ସଂସ୍କାର ବା ଉପନୟନ ହୋଇ ନ ଥାଏ, ସେପର୍ଯ୍ୟନ୍ତ ଶୂଦ୍ରତ୍ୱ ଥାଏ, ଉପନୟନ ହେଲେ ଦ୍ୱିଜତ୍ୱ ଘଟେ, ବେଦ ଅଭ୍ୟାସକଲେ ବିପ୍ରତ୍ୱ ଏବଂ ବ୍ରହ୍ମଜ୍ଞାନ ଜନ୍ମିଲେ ବ୍ରାହ୍ମଣତ୍ୱ ଘଟିଥାଏ ।

ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କ ପରି ଛତ୍ରବିପ୍ରମାନଙ୍କର ମଧ୍ୟ ଉପନୟନାଦି ସଂସ୍କାର ବିଦ୍ୟମାନ ଅଛି । ଅନ୍ୟାନ୍ୟ ବ୍ରାହ୍ମଣମାନେ କେବଳ ଗାୟତ୍ରୀମନ୍ତ୍ରରେ ଦୀକ୍ଷିତ କିନ୍ତୁ ଛତ୍ରବିପ୍ରମାନେ ଗାୟତ୍ରୀ ମନ୍ତ୍ରରେ ଦୀକ୍ଷିତ ହେବା ପରେ ପୁନଃ ନବଗ୍ରହଙ୍କ ମନ୍ତ୍ରରେ ଦୀକ୍ଷିତ ହୁଅନ୍ତି । ଏହି ପାର୍ଥକ୍ୟ ହେତୁରୁ ଅନ୍ୟ ବ୍ରାହ୍ମଣମାନଙ୍କର ଗ୍ରହପୂଜା ଓ ଗ୍ରହଦାନାଦି ଗ୍ରହଣ କରିବାର ଅଧିକାର ନାହିଁ । ଯଥା ବ୍ରହ୍ମସିଦ୍ଧାନ୍ତେ ;—"ନାଧିକୁର୍ବନ୍ତି ତେ ବିପ୍ରା ଗ୍ରହତୋଷଣ କର୍ମଣି । ଯେଽପ୍ରାପ୍ତ ସଂସ୍କାର ଦୀକ୍ଷା ନବଧା ଜପଲକ୍ଷଣେ ।" ଇତ୍ୟାଦି । ଶାସ୍ତ୍ରରେ ଛତ୍ରବିପ୍ରମାନଙ୍କର ବେଦାଧ୍ୟାପନ ପ୍ରଭୃତି ବ୍ରାହ୍ମଣୋଚିତ ବୃତ୍ତି ଦେଖାଯାଏ ।

"ଜ୍ୟୋତିଷାଧ୍ୟାପନଂ ପୂଜା ବେଦଶାସ୍ତ୍ରପ୍ରକୀର୍ତ୍ତନଂ ।
ଯଜ୍ଞପ୍ରତିଗ୍ରହୋ ଭିକ୍ଷାଷଡ଼୍‌ଭିର୍ଦ୍ୱିଜଲକ୍ଷଣମ୍ । (ଗ୍ରହଯାମଳ

ଅର୍ଥ ।—ଜ୍ୟୋତିଷାଧ୍ୟାପନ, ଗ୍ରହଯଜ୍ଞ (ଗ୍ରହଶାନ୍ତି) ଗ୍ରହ-ପୂଜା, ବେଦଶାସ୍ତ୍ର କଥନ, ଦାନଗ୍ରହଣ ଓ ଭିକ୍ଷା ; ଏହି ଛଅ :

ଗ୍ରହବିପ୍ରଙ୍କର ନିର୍ଦ୍ଦିଷ୍ଟ ବୃତ୍ତି । ଗ୍ରହବିପ୍ରଜାତି ଏହି ଷଡ଼୍‌ବିଧ ବୃତ୍ତି ଦ୍ୱାରା ଜୀବିକା ନିର୍ବାହ କରି ଆସୁଅଛନ୍ତି ।

"ଷଟ୍‌କର୍ମାଣି ବିଜାନୀୟାତ୍ ଧର୍ମାଽର୍ଥକାରଣମ୍ ।
ଶୁଶ୍ରୂଷା କାରଣଞ୍ଚୈବ ବିବିଧଂ ପ୍ରକୀର୍ତ୍ତିତମ୍ ।"

ଅର୍ଥ ।—ବ୍ରାହ୍ମଣମାନଙ୍କର ୬ଟି କର୍ମ ସେମାନଙ୍କର ଧର୍ମର କାରଣ, ଅର୍ଥର କାରଣ ଓ ସେବାର କାରଣ ବୋଲି ଜାଣିବ । ଗ୍ରହବିପ୍ରମାନଙ୍କର ବୃତ୍ତି ସମ୍ବନ୍ଧରେ ବୃହଦ୍ଧର୍ମପୁରାଣ ଉତ୍ତରଖଣ୍ଡ ୧୪ଶ ଅଧ୍ୟାୟରେ ଲେଖାଅଛି :—

ଗଣକାୟ ଦଦୌ ସ୍ରଷ୍ଟା ଜ୍ୟୋତିଃଶାସ୍ତ୍ରାଣି ସର୍ବଶଃ ।
ଗ୍ରହବିପ୍ରମ କୁର୍ବନ୍ତୁ ପୂଜା ହୋମସଞ୍ଚୟଣମ୍ । ୬୬ ।

ଅର୍ଥ —ସମସ୍ତ ଜ୍ୟୋତିଷଶାସ୍ତ୍ର ଗଣକଙ୍କ ହସ୍ତରେ ପ୍ରଦତ୍ତ ହେଲା ଏବଂ ଗ୍ରହମାନଙ୍କର ପୂଜା ଓ ହୋମାଦି କାର୍ଯ୍ୟ ଗ୍ରହବିପ୍ର-ମାନଙ୍କର ବୃତ୍ତିରୂପେ ନିର୍ଦ୍ଦିଷ୍ଟ ହେଲା । ( ଗ୍ରହବିପ୍ରମାନେ ଅତି ପ୍ରାଚୀନ କାଳରୁ ଆଜିପର୍ଯ୍ୟନ୍ତ ସ୍ୱ ବୃତ୍ତିରେ ଚଳିଆସୁଥିବାସ୍ଥଳେ ତାହା ବିଶେଷ ଉଲ୍ଲେଖ ଅନାବଶ୍ୟକ ଅଟେ । )

## ସପ୍ତମ ଅଧ୍ୟାୟ ।

### ଗ୍ରହବିପ୍ରଙ୍କର ଅଧିକାର ।

"ଗ୍ରହାନୁଦ୍ଦିଶ୍ୟ ଯଦ୍‌ଦାନଂ ଗ୍ରହବିପ୍ରାୟ ତର୍ପୟେତ୍ ।"

(ବ୍ରହ୍ମସିଦ୍ଧାନ୍ତ ।)

ଅର୍ଥ ।—ଗ୍ରହଙ୍କ ଉଦ୍ଦେଶ୍ୟରେ ଯେଉଁସବୁ ଦାନ, ତାହା ସମସ୍ତ ଗ୍ରହବ୍ରାହ୍ମଣମାନଙ୍କୁ ପ୍ରଦାନ କରିବ ।

"ହୋମୋ ମନ୍ତ୍ରଜପଃ କାର୍ଯ୍ୟୋ ଗ୍ରହାଣାଂ ଗ୍ରହବିପ୍ରତଃ ।
ଦାନ ତଦ୍‌ଗ୍ରହବିପ୍ରାୟ ଗ୍ରହବ୍ରାହ୍ମଣ ଭୋଜନଂ ।

(ବ୍ରହ୍ମଯାମଳ ୨୯ ପଟଳ ।)

ଅର୍ଥ ।—ଗ୍ରହଙ୍କର ହୋମ, ମନ୍ତ୍ର ଓ ଜପ କାର୍ଯ୍ୟାଦି ଗ୍ରହବିପ୍ରଙ୍କ ଦ୍ୱାରା ସମ୍ପନ୍ନ କରାଇବ ; ଗ୍ରହମାନଙ୍କର ଦାନପତ୍ର ଗ୍ରହବିପ୍ରଙ୍କୁ ଦେବ ଏବଂ ଗ୍ରହବିପ୍ରଙ୍କୁ ଭୋଜନ କରାଇବ ।

ଗ୍ରହବିପ୍ରାସ୍ତୁ ଗଣକ ସ୍ତଥା ପୂଜାପ୍ରୀତିପ୍ରଦ୍ୱିଜେ ମେ ।

(ବୃହତ୍ ପୁରାଣ ଉତ୍ତରଖଣ୍ଡ ୧୦ମ ଅଃ ।)

ଅର୍ଥ ।—ଗଣକ ଗ୍ରହବିପ୍ରମାନେ ଗ୍ରହମାନଙ୍କର ପୂଜା କଲେ ସେମାନେ ପ୍ରୀତ ହୋଇଥାନ୍ତି ।

ଗ୍ରହବିପ୍ରୋ ମହେଶାନ ବ୍ରହ୍ମା ହୋତାଚ ପୁସ୍ତକୀ ।
ଗ୍ରହାଧ୍ୱରେ ସଦସ୍ୟଃ ଯୋଽନ୍ୟଥା ବହ୍ନିଃ ଫଳାପ୍ନୁତେଃ ।

(ବ୍ରହ୍ମଯାମଳ ।)

ଅର୍ଥ ।—ଗ୍ରହବିପ୍ରମାନେ ବ୍ରହ୍ମା, ହୋତା, ପୁସ୍ତକଧାରୀ (ଆଚାର୍ଯ୍ୟ) ଓ ସଦସ୍ୟ ହୋଇ ଗ୍ରହଯଜ୍ଞ କରିବେ, ଅନ୍ୟଥା ଗ୍ରହଯଜ୍ଞର ଫଳ ହୁଏନାହିଁ ।

ଅତସ୍ତୁ ସାଧକୈର୍ନୈବ କର୍ତ୍ତବ୍ୟଂ ଗ୍ରହପୂଜନଂ ।
ଅନ୍ୟଥା ଗ୍ରହଦୋଷେଣ ନ କଦାଚିତ୍ ଫଳଂ ଭବେତ୍ ॥

( ପ୍ରାଣକୃଷ୍ଣ ବିଶ୍ୱାସସଂଗୃହୀତ ବାଣୀତନ୍ତ୍ର । )

ଅର୍ଥ ।—ଅତଏବ ଗ୍ରହପୂଜକ ଗ୍ରହବିପ୍ରଙ୍କ ଦ୍ୱାରା ଗ୍ରହପୂଜା କରିବ, ନଚେତ୍ ଗ୍ରହପୂଜାର କୌଣସି ଫଳ ହୁଏନାହିଁ ।

ତଦୁକ୍ତ ଲିଙ୍ଗିନାଂ ପଶ୍ଚାଦ୍ ଭୋଜନଂ ଦାନମାଚରେତ୍ ।
ନାନାବସ୍ତ୍ର ବିଶେଷୈଶ୍ଚ ତଥା ମିଷ୍ଟାନ୍ନପାନକୈଃ ।
ଯାବତ୍ ଭବନ୍ତି ସନ୍ତୁଷ୍ଟା ସ୍ତାବତ୍ ସସ୍ତାପ୍ୟ ପୂଜୟେତ୍ ।
ଭୁଞ୍ଜୀୟାନ୍ତୁ ନ ସନ୍ଦେହଃ ପୀଡ଼ାଂ ତ୍ୟକ୍ତ୍ୱା ନବଗ୍ରହାଃ । ବୃଃଜ୍ୟୋଃ

ଅର୍ଥ ।—ଗ୍ରହବସ୍ତମାନେ ଗ୍ରହମାନଙ୍କୁ ପୂଜା କରନ୍ତି, ତେଣୁ ଗ୍ରହବସ୍ତଙ୍କ ପ୍ରତି ଗ୍ରହମାନେ ସନ୍ତୁଷ୍ଟ ଥାଆନ୍ତି । ଯେଉଁବ୍ୟକ୍ତି ଗ୍ରହବିପ୍ରଙ୍କ ପ୍ରତି ସନ୍ତୁଷ୍ଟ ହୋଇ ଗ୍ରହଦାନ ଦେଇ ଗ୍ରହବିପ୍ରଙ୍କୁ ଭୋଜନ କରାନ୍ତି, ତାହାଙ୍କର ନବଗ୍ରହଜନିତ ପୀଡ଼ା ଦୂରହୁଏ, ଏଥିରେ କିଛି ସନ୍ଦେହ ନାହିଁ ।

ଗ୍ରହାଣାଂ ଲୋକପାଳାନାଂ କ୍ରୂରଭୂତାଦି କସ୍ୟ ଚ ।
ମାତୃକାନାଂ ଯୋଗିନୀନାଂ ଗଣେଶସ୍ୟ ସୁରେଶ୍ୱରି ॥
ତିଥିନକ୍ଷତ୍ରଯୋଗାନାଂ ବାରାଣାଂ କରଣସ୍ୟ ଚ ।
ବାସୁଦେବସ୍ୟ ଯଦ୍ଦାନଂ ଗ୍ରହବିପ୍ରାୟ ସମର୍ପୟେତ୍ ॥
ଗ୍ରହେ ଦେୟଞ୍ଚ ଦାନାନି ଗ୍ରହେ ଦେୟଞ୍ଚ ଦକ୍ଷିଣା ।
ଗ୍ରହବିପ୍ରାୟ ଦାତବ୍ୟା ଅନ୍ୟଥା ନିଷ୍ଫଳୀଭବେତ୍ ॥
ଲୋଭାତ୍ ଗୃହ୍ଣାତି ଯୋ ବିପ୍ରୋ ଜ୍ଞାନତୋଽଜ୍ଞାନତୋଽପିବା
ଜନ୍ମନି ଦରିଦ୍ରଃ ସ୍ୟାତ୍ ମୃତେ ଚ ନରକଂ ବ୍ରଜେତ୍ ॥
( ଗ୍ରହଯାମଳ । )

ଅର୍ଥ ।—ଗ୍ରହଦାନ, ଲୋକପାଳାଦି, କ୍ରୂରଭୂତାଦି, ମାତୃକା, ଯୋଗିନୀ, ଗଣେଶଙ୍କର ପୂଜାଦ୍ରବ୍ୟ, ତିଥି, ନକ୍ଷତ୍ର, ଯୋଗ, ବାର ଓ କରଣ ବିଶୁଦ୍ଧି ନିମନ୍ତେ ଦାନ ଏବଂ ବାସୁଦେବଙ୍କ ଉଦ୍ଦେଶ୍ୟରେ ଯେଉଁସବୁ ଦାନ, ତାହା ଗ୍ରହବିପ୍ରଙ୍କୁ ଅର୍ପଣ କରିବ । ଅନ୍ୟଥା କଲେ କ୍ରିୟା ନିଷ୍ଫଳ ହେବ । ଗ୍ରହବିପ୍ର ଭିନ୍ନ ଯେଉଁ ବ୍ରାହ୍ମଣ ଲୋଭରେ ବଶୀଭୂତ ହୋଇ ଜ୍ଞାନତଃ ବା ଅଜ୍ଞାନ ବଶତଃ ଏହିସବୁ ଦାନ ଗ୍ରହଣ କରନ୍ତି, ସେହି ବ୍ରାହ୍ମଣ ଇହଜନ୍ମରେ ଦରିଦ୍ର ହୁଅନ୍ତି ଏବଂ ମୃତ୍ୟୁପରେ ନରକକୁ ଗମନକରନ୍ତି ।

ଗ୍ରହଦାନ ବ୍ରାହ୍ମଣଙ୍କୁ ଦେବା ନିଷେଧ ।

ଗ୍ରହଦାନଂ ଦ୍ୱିଜାତିଭ୍ୟଃ ଯଃ ପ୍ରଦାସ୍ୟତି ଚ ।

ଅପିବୁଦ୍ଧ୍ୟାଗ୍ରହବିପ୍ରସ୍ୟ ଦାତୁସମ୍ପୂର୍ଣ୍ଣଫଳ କ୍ଷୟଂ । ( ଗ୍ରହଯାମଳ )

ଅର୍ଥ ।—ଯେଉଁବ୍ୟକ୍ତି ବନ୍ତ୍ରପଦ୍ଧକାରେ ଗ୍ରହବିପ୍ରଙ୍କୁ ଗ୍ରହଦାନ ନ ଦିଅନ୍ତି, ଗ୍ରହମାନେ ତାହାପ୍ରତି ରୁଷ୍ଟ ହୋଇ ଅପୂ ଧନକ୍ଷୟ କରନ୍ତି ।

ଗ୍ରହୋଦ୍ଦେଶେନ ଯଦାନଂ ଗ୍ରହବିପ୍ରାୟ ସମର୍ପୟେତ୍ ।
ଦତ୍ତେଽନ୍ୟସ୍ମିନ୍ ଦ୍ୱିଜେଭ୍ୟଶ୍ଚ ବ୍ୟର୍ଥତ୍ୱଂ ଜାୟତେ ॥ ବ୍ରହ୍ମସଂହିତା

ଅର୍ଥ ।—ଗ୍ରହଙ୍କ ଉଦ୍ଦେଶ୍ୟରେ ଯେଉଁସବୁ ଦ୍ରବ୍ୟ ଦାନ କରିବ, ସେସମସ୍ତ ଗ୍ରହବ୍ରାହ୍ମଣମାନଙ୍କୁ ଦେବ । ଯଦ୍ୟପି (ଭ୍ରମବଶତଃ) ସେହିସବୁ ଦାନ-ସାମଗ୍ରୀ ଅନ୍ୟ ବ୍ରାହ୍ମଣମାନଙ୍କୁ ପ୍ରଦାନ କରିଯାଏ, ତାହା ସମସ୍ତ ବିଫଳ ହୁଏ ।

ଗ୍ରହବ୍ରାହ୍ମଣଭିନ୍ନା ଯେ ବିପ୍ରାଃ କୁର୍ଯ୍ୟୁଃ ଗ୍ରହକ୍ରିୟାଂ ।
ଅନ୍ଧତାମିସ୍ରନାମକେ ପତନ୍ତ୍ୟାହୁତ ସମ୍ପ୍ଲବ ॥ (ବ୍ରହ୍ମବୈବର୍ତ୍ତ ।)

ଅର୍ଥ ।—ଗ୍ରହବିପ୍ର ଭିନ୍ନ ଅନ୍ୟାନ୍ୟ ବ୍ରାହ୍ମଣ ଯଦ୍ୟପି ଗ୍ରହମାନଙ୍କର ଗତିବିଧି ଚର୍ଚ୍ଚା, ଅଙ୍କଗଣନା ପ୍ରଭୃତି (ଗ୍ରହସମ୍ବନ୍ଧୀୟ) କାର୍ଯ୍ୟ କଲେ, ସେମାନେ ଚିରଦିନ ସକାଶେ ତାମିସ୍ର ନାମକ ନରକରେ ନିଶ୍ଚୟ ବାସ କରିବେ ।

ପୁଷ୍କରଦୋଷ ।—ପୁଷ୍କରଦୋଷରେ ଯେ ଯେ ଦ୍ରବ୍ୟମାନଙ୍କ ଦାନ ହୁଏ, ତାହା ପ୍ରାୟ ସମସ୍ତଙ୍କୁ ବିଦିତଅଛି ଯେ ;—

ବାରେ ଶଯ୍ୟା ସ୍ୱର୍ଣ୍ଣଂ ଦଦ୍ୟାତ୍ ତିଥୌ ଗୋଧନମେବଚ ।
ନକ୍ଷତ୍ରେ ଗୋତ୍ରଦାନଃ ସ୍ୟାଦ୍ ବାସ୍ତୁବୃକ୍ଷୋ ନ ସୀଦତି ।
( ଗ୍ରହଯାମଳ । )

ଅର୍ଥ ।—ପୁଷ୍କରଯୋଗ ବାର-ଦୋଷରେ ଶଯ୍ୟା ଓ ସୁବର୍ଣ୍ଣଦାନ, ତିଥିଦୋଷରେ ଗୋ ଓ ଧନଦାନ ଏବଂ ନକ୍ଷତ୍ରଦୋଷରେ ବସ୍ତ୍ର ଓ ବାସ୍ତୁବୃକ୍ଷ ଦାନ ଅନିବାର୍ଯ୍ୟ ।

ଯେ ପୁଷ୍କରଦୋଷରେ ଏରୂପ ବର୍ଣ୍ଣନାର ତାତ୍ପର୍ଯ୍ୟ, ସେହି ଦୋଷ ନିବାରଣ କରିବାରେ ସମର୍ଥ ହୁଏ ?

ପୁଷ୍କରାର୍ଦ୍ଧକେ ଦେବ ହୋମ ବଳ୍ଗା ଚ ପୁସ୍ତକା ।
ମଦଶ୍ୟା ଶାକଦ୍ୱୀପ ଦେବୋଽନ୍ୟଥା ନିଷ୍ଫଳା କ୍ରିୟା ।
ଶାକଦ୍ୱୀପେରେଭେ ଯସ୍ତୁ ବ୍ରାହ୍ମଣୋ ଲୋଭମୋହିତଃ ;
ଗୃହୀତ୍ୱା ପୁଷ୍କରଦ୍ରବ୍ୟ ପ୍ରଯାତି ଘୋର ରୌରବଂ ।
( ଭବିଷ୍ୟେପୁରାଣ । )

ଅର୍ଥ ।—ପୁଷ୍କର ମଞ୍ଚରେ କେବଳ ଶାକଦ୍ୱୀପମାନଙ୍କ ଦ୍ୱାରା ହୋମ, ମନ୍ତ୍ର, ଜପ, ଇତ୍ୟାଦି ସମସ୍ତ କାର୍ଯ୍ୟ ସମ୍ପନ୍ନ ହେବ । ଏହା ଅନ୍ୟଥା କଲେ କ୍ରିୟା ନିଷ୍ଫଳ ହୁଏ । ଯଦ୍ୟପି ଶାକଦ୍ୱୀପ ଛଡ଼ା ଅନ୍ୟକୌଣସି ବ୍ରାହ୍ମଣ ଲୋଭରେ ମୁଗ୍ଧ ହୋଇ ପୁଷ୍କରଦ୍ରବ୍ୟ ଗ୍ରହଣ କରେ, ତାହାହେଲେ ସେ ଘୋର ନରକରେ ପ୍ରବେଶ କରେ ।

ସୂର୍ଯ୍ୟଙ୍କର ପୂଜାଦ୍ରବ୍ୟ—ସୂର୍ଯ୍ୟଦେବଙ୍କ ପୂଜା ଦ୍ରବ୍ୟରେ ଶାକଦ୍ୱୀପମାନେ ଅଧିକାରୀ ଅଟନ୍ତି । ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୧୭ ଅଧ୍ୟାୟରେ ଲେଖାଅଛି ;—

ଯତ୍କିଞ୍ଚିତ୍ ଭବେତ୍ ଦ୍ରବ୍ୟ ଗ୍ରାମେ ବା ନଗରେ କ୍ୱଚିତ୍ ।
ତସ୍ୟ ନାନ୍ୟସ୍ୟ ଖଗେନ୍ଦ୍ର ! ମଗାସ୍ୟସ୍ୟ ସମନ୍ତତଃ ।
ଅଧୀପା ଭୋଜକାଃ ସର୍ବେ ନାନ୍ୟେ ବର୍ଣ୍ଣାଦୟୋ ନୃପ ।

ଅର୍ଥ ।—ହେ ଖଗେନ୍ଦ୍ର ! ଗ୍ରାମରେ ବା ନଗରରେ ମୋର (ସୂର୍ଯ୍ୟଦେବଙ୍କର) ଯାହାକିଛି ପୂଜାଦ୍ରବ୍ୟ ହେବ, ସେହିସବୁ ଦ୍ରବ୍ୟରେ ଭୋଜକ (ଶାକଦ୍ୱୀପ)ମାନେ ଅଧିକାରୀ ହେବେ । ଅନ୍ୟାନ୍ୟ ବ୍ରାହ୍ମଣମାନେ ମୋର ପୂଜା ଦ୍ରବ୍ୟରେ ଅଧିକାରୀ ନୁହନ୍ତି ।

ଯଥାଧିକାରୀ ପୁତ୍ରସ୍ତୁ ପିତୃଦ୍ରବ୍ୟସ୍ୟ ବୈ ଭବେତ୍ ।
ତଥା ମଦୀୟ ବସ୍ତୁସ୍ୟ ବୈଦିକାଃ ସ୍ୱାମିନଃ ସଦା ।

ଅର୍ଥ ।— ପୁତ୍ର ଯେପରି ପିତୃ ଦ୍ରବ୍ୟରେ ଅଧିକାରୀ, ବୈଦିକ ବ୍ରାହ୍ମଣମାନେ ସେହିପରି ମୋର ପୂଜା-ଦ୍ରବ୍ୟରେ ଅଧିକାରୀ ହୁଅନ୍ତି ।



# ଅଷ୍ଟମ ଅଧ୍ୟାୟ ।

## ଭାଗବତଙ୍କର ମାହାତ୍ମ୍ୟ ।

ଭାଗବତମାନେ ପ୍ରକୃତ ବ୍ରାହ୍ମଣ, ଶାସ୍ତ୍ରେ ତାହାର ଭୂରି ପ୍ରମାଣ ପ୍ରଦତ୍ତ ହୋଇଅଛି । ସୁତରାଂ ସାଧାରଣଙ୍କ ଗୋଚରାର୍ଥେ ମାହାତ୍ମ୍ୟ ସମ୍ବନ୍ଧରେ କେତୋଟି ସୂକ୍ଷ୍ମ ପ୍ରମାଣ ଉଦ୍ଧୃତ କରୁଅଛୁ ; ଏହାଦ୍ୱାରା ଭ୍ରାନ୍ତଧାରଣା ଦୂରହେଲେ ଉପକୃତ ହେବୁଁ ।

## ବେଦାଙ୍ଗ ଶାସ୍ତ୍ରର ନାମ ।

ଋଗ୍ବେଦ ୧ମ ସ୍ତୋତ୍ରରେ ବେଦର ଛଅଟି ଶାଖା ବିଷୟ ନାରାୟଣୀୟ ପାଣିନୀୟଶିକ୍ଷା ଏବଂ ମାଣ୍ଡୁକ୍ୟୋପନିଷଦର ଟୀକାରେ ଲେଖାଅଛି ;—

ଛନ୍ଦଃ ପାଦୌ ତୁ ବେଦସ୍ୟ ହସ୍ତୌ କଳ୍ପୋଽଥ ପଠ୍ୟତେ ।
ଜ୍ୟୋତିଷାମୟନଂ ଚକ୍ଷୁଃ ନିରୁକ୍ତଂ ଶ୍ରୋତ୍ରମୁଚ୍ୟତେ । ୪୧
ଶିକ୍ଷା ଘ୍ରାଣଂ ତୁ ବେଦସ୍ୟ ମୁଖଂ ବ୍ୟାକରଣଂ ସ୍ମୃତମ୍ ।
ତସ୍ମାତ୍ ସାଙ୍ଗମଧୀତ୍ୟୈବ ବ୍ରହ୍ମଲୋକେ ମହୀୟତେ । ୪୨

ଅର୍ଥ ।—ଛନ୍ଦ ବେଦର ପାଦଦ୍ୱୟ, କଳ୍ପ ହସ୍ତଦ୍ୱୟ, ଜ୍ୟୋତିଷ ବେଦର ଚକ୍ଷୁ, ନିରୁକ୍ତ କର୍ଣ୍ଣ, ଶିକ୍ଷା ବେଦର ନାସିକା ଏବଂ ବ୍ୟାକରଣ ବେଦର ମୁଖ ବୋଲି ଉକ୍ତଅଛି । (ଉପରୋକ୍ତ ଅଙ୍ଗସହିତ ବେଦାଧ୍ୟୟନ କରିବା ବିଧେୟ ।) ଏଣୁକରି ଜ୍ୟୋତିଃଶାସ୍ତ୍ରକୁ "ବେଦାଙ୍ଗଶାସ୍ତ୍ର" ବୋଲାଯାଏ ।

ବେଦସ୍ୟ ନିର୍ମ୍ମଳଂ ଚକ୍ଷୁର୍ଜ୍ୟୋତିଃଶାସ୍ତ୍ରମକଳ୍ମଷଂ ।
ବିନୈତଦଖିଳଂ ଶ୍ରୌତସ୍ମାର୍ତ୍ତଂ କର୍ମ୍ମ ନ ସିଦ୍ଧ୍ୟତି ॥ (ନାରଦସଂହିତା)

ଅର୍ଥ ।—ପବିତ୍ର ଜ୍ୟୋତିଷଶାସ୍ତ୍ର ବେଦର ନିର୍ମ୍ମଳ ଚକ୍ଷୁ ସ୍ୱରୂପ, ଏହା ବ୍ୟତୀତ ଶ୍ରୁତି, ସ୍ମୃତି ସମ୍ମତ ଯାବତୀୟ କାର୍ଯ୍ୟ ସିଦ୍ଧ ହୁଏନାହିଁ । ଏପରି ଜ୍ୟୋତିଷଶାସ୍ତ୍ର ଯେ ଗ୍ରହବିପ୍ର ଜାତି ଉପରେ ନିର୍ଭର ରହିଅଛି, ସେମାନେ ଅବଶ୍ୟ ପୂଜନୀୟ ।

ବେଦାଙ୍ଗ ମଧ୍ୟରେ ଜ୍ୟୋତିଃଶାସ୍ତ୍ର ଶ୍ରେଷ୍ଠ ।

ଯଥା ଶିଖା ମୟୂରାଣାଂ ନାଗାଣାଂ ମଣୟୋ ଯଥା ।
ତଦ୍ଵଦ୍ ବେଦାଙ୍ଗଶାସ୍ତ୍ରାଣାଂ ଜ୍ୟୋତିଷଂ ମୂର୍ଦ୍ଧନିସ୍ଥିତଂ ॥ (ଗର୍ଗ)

ଅର୍ଥ ।—ଶିଖା ଯେପରି ମୟୂରର ମସ୍ତକରେ ଥାଏ, ମଣି ଯେପରି ସର୍ପ ମସ୍ତକରେ ଶୋଭାପାଏ ; ସେହିପରି ଜ୍ୟୋତିଃଶାସ୍ତ୍ର ମଧ୍ୟ ବେଦାଙ୍ଗ ମସ୍ତକରେ ଅବସ୍ଥିତ ଅର୍ଥାତ୍ ବେଦାଙ୍ଗ ମଧ୍ୟରେ ଜ୍ୟୋତିଷଶାସ୍ତ୍ର ଶ୍ରେଷ୍ଠ ଅଟେ ।

ଗ୍ରହବିପ୍ର ସମ୍ବନ୍ଧରେ ପ୍ରମାଣ ।

ଯସ୍ତୁ ସମ୍ୟକ୍ ବିଜାନାତି ହୋରାଗଣିତସଂହିତାଃ ।
ଅଭ୍ୟର୍ଚ୍ଚ୍ୟଃ ସ ନରେନ୍ଦ୍ରେଣ ସ୍ୱୀକର୍ତ୍ତବ୍ୟୋ ଜୟୈଷିଣା ॥ (ଗର୍ଗ)

ଅର୍ଥ ।—ଗ୍ରହବିପ୍ରମାନେ ହୋରା, ଗଣିତ ଓ ସଂହିତା ; ଅର୍ଥାତ୍ ସମସ୍ତ ଜ୍ୟୋତିଃଶାସ୍ତ୍ର ତିନିସ୍କନ୍ଧରେ ବିଭକ୍ତ—ହୋରା, ଗଣିତ ଓ ସଂହିତା) ସହିତ ଜ୍ୟୋତିଃଶାସ୍ତ୍ର ଅବଗତ ଅଛନ୍ତି,

ନିଷ୍କପଟ, ରଜାମାନେ ସେହି ଜ୍ୟୋତିର୍ବିଦର ଆଦେଶ ସ୍ୱୀକାର କରିବେ ।

ଦିବ୍ୟଂ ଚକ୍ଷୁ ର୍ଗ୍ରହାଣାନ୍ତୁ ଦର୍ଶିତଂ ଜ୍ଞାନମୁତ୍ତମଂ ।
ବିଜ୍ଞାୟାର୍କାଦି ଲୋକେଷୁ ସ୍ଥାନଂ ପ୍ରାପ୍ନୋତି ଶାଶ୍ୱତଂ । (ବୃଃ ସଂ)

ଅର୍ଥ ।—ଗ୍ରହବିପ୍ରମାନେ ଦିବ୍ୟଚକ୍ଷୁ ସ୍ୱରୂପ—ସମସ୍ତ ଉତ୍ତମଜ୍ଞାନ ପ୍ରଦର୍ଶନ କରାଇ ଦିଅନ୍ତି, ଏଣୁ ଯେଉଁବ୍ୟକ୍ତି ସେମାନଙ୍କୁ ପୂଜା କରନ୍ତି, ଅନ୍ତିମ କାଳରେ ସେମାନେ ସୂର୍ଯ୍ୟାଦି ଲୋକରେ ସ୍ଥାନ ପାଇଥାନ୍ତି ।

ନକ୍ଷତ୍ରତିଥିପୁଣ୍ୟାହ ନ୍ ମୁହୂର୍ତ୍ତାନ୍ ମଙ୍ଗଳାନ ଚ ।
ବିନର୍ଦ୍ଦିଶନ୍ତି ଯେ ବିପ୍ରା ସ୍ତେପୂଜ୍ୟାଃ ସର୍ବକର୍ମସୁ ॥ (ଯମଃ)

ଅର୍ଥ ।—ନକ୍ଷତ୍ର, ତିଥି, ପୁଣ୍ୟଦିନ, ମୁହୂର୍ତ୍ତ ଓ ଶୁଭବିଷୟକ ଯେ ବିପ୍ର (ଗ୍ରହବିପ୍ର) ନିର୍ଦ୍ଦେଶ କରିଅଛନ୍ତି, ସେହି ବିପ୍ରମାନେ ସମସ୍ତ କର୍ମରେ ପୂଜ୍ୟ ହୁଅନ୍ତି ।

ଯେଽର୍ଚ୍ଚୟନ୍ତି ଦ୍ୱିଜାନ୍ ଲୋକେ ଶାକଦ୍ୱୀପୀ କୁଳୋଦ୍ଭବାନ୍ ।
ବୈକୁଣ୍ଠଂ ଯାନ୍ତିତେ ସର୍ବେ ଶ୍ରୀକୃଷ୍ଣସ୍ୟ ପ୍ରସାଦତଃ । (ଭଃ ପୁଃ ବ୍ରା)

ଅର୍ଥ ।—ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କୁ ଯେଉଁମାନେ ଅର୍ଚ୍ଚନା କରନ୍ତି, ସେମାନେ ଶ୍ରୀକୃଷ୍ଣଙ୍କ ପ୍ରସାଦରେ ବୈକୁଣ୍ଠକୁ ଗମନ କରନ୍ତି ।

ଯତ୍ର ଦେବାଃ ଚ ପୂଜ୍ୟନ୍ତେ ସାମ୍ବତ୍ସରପୁରୋହିତୌ ।
ଗୁରବୋ ଗ୍ରହ ନକ୍ଷତ୍ରଂ ତଦ୍ରାଜ୍ୟଂ ବୃଦ୍ଧିଲକ୍ଷଣମ୍ । (ବୃଃ ସଂହିତା)

ଅର୍ଥ ।—ଦେବତା, ଜ୍ୟୋତିର୍ବିଦ, ପୁରୋହିତ, ଗୁରୁ, ଗ୍ରହ ଓ ନକ୍ଷତ୍ରର ପୂଜା ଦ୍ୱାରା ରାଜ୍ୟର ଉନ୍ନତି ହୁଏ ।

### ଜ୍ୟୋତିଃଶାସ୍ତ୍ରାଧ୍ୟୟନ ଫଳ ।

ଜ୍ୟୋତିଶ୍ଚକ୍ରେତୁ ଲୋକସ୍ୟ ସର୍ବସ୍ୟୋକ୍ତଂ ଶୁଭାଶୁଭଂ ।

ଜ୍ୟୋତିର୍ଜ୍ଞାନାତ୍ତୁ ଯୋ ବେଦ ସ ଯାତି ପରମାଂ ଗତିଂ । (ଗର୍ଗ)

ଅର୍ଥ ।—ଜ୍ୟୋତିଷ ଦ୍ୱାରା ସମସ୍ତ ଲୋକଙ୍କର ଶୁଭାଶୁଭ ଘଟନା ନିର୍ଣ୍ଣୀତ ହୋଇଥାଏ । ଗ୍ରହବିପ୍ରମାନେ ଏହି ଜ୍ୟୋତିଷ-ଶାସ୍ତ୍ର ଅବଗତ ଅଛନ୍ତି, ଏଣିମନ୍ତେ ସେମାନେ ପରମଗତି ପ୍ରାପ୍ତହୁଅନ୍ତି

ନ ସାମ୍ବତ୍ସର ପାଠୀ ଚ ନରକେ ପରିପଚ୍ୟତେ ।
ବ୍ରହ୍ମଲୋକ ପ୍ରତିଷ୍ଠାଞ୍ଚ ଲଭତେ ଦୈବଚିନ୍ତକଃ । (ବୃହତ୍ସଂହିତା)

ଅର୍ଥ ।—ସାମ୍ବତ୍ସର ପାଠୀ (ଅର୍ଥାତ୍ ଜ୍ୟୋତିଃଶାସ୍ତ୍ର ପାଠକ) ନରକକୁ ଗମନ କରନ୍ତି ନାହିଁ । ଦୈବଚିନ୍ତକ (ଗ୍ରହବିପ୍ର)ମାନେ ବ୍ରହ୍ମଲୋକରେ ପ୍ରତିଷ୍ଠାଲାଭ କରନ୍ତି ।

## ଜ୍ୟୋତିଃଶାସ୍ତ୍ର ବ୍ରାହ୍ମଣଙ୍କର ପାଠ୍ୟ ।

ବିନୈତଦଖିଳଂ ଶ୍ରୌତସ୍ମାର୍ତ୍ତଂ କର୍ମ ନ ସିଧ୍ୟତି ।
ତସ୍ମାଜ୍ଜଗଦ୍ଧିତାୟେଦଂ ବ୍ରହ୍ମଣା ନିର୍ମିତଂ ପୁରା ।
ଅତଏବ ଦ୍ୱିଜୈରେତଦଧ୍ୟେତବ୍ୟଂ ପ୍ରୟତ୍ନତଃ । (ନାରଦଃ)

ଅର୍ଥ ।—ଜ୍ୟୋତିଷଶାସ୍ତ୍ର ଦ୍ୱାରା କାଳ ନିରୂପଣ ନହେଲେ ଶ୍ରୌତକର୍ମ ଅର୍ଥାତ୍ ବେଦବିହିତ କର୍ମ ଏବଂ ସ୍ମୃତି-ବିହିତକର୍ମ ସମ୍ପନ୍ନ ହୋଇ ପାରେନାହିଁ । ଏଣିମନ୍ତେ ବ୍ରହ୍ମା ଜଗତର ହିତ ସକାଶେ ଏହିଶାସ୍ତ୍ର ନିର୍ମାଣ କରିଅଛନ୍ତି । ଅତଏବ ଏହା ବ୍ରାହ୍ମଣଙ୍କର ପାଠ୍ୟ ।

## ଶୂଦ୍ରକୁ ଜ୍ୟୋତିଃଶାସ୍ତ୍ର ଶିକ୍ଷାଦେବା ମହାପାପ ।

ସ୍ନେହାଲ୍ଲୋଭାଚ୍ଚ ମୋହାଚ୍ଚ ଯୋ ବିପ୍ରୋଽଜ୍ଞାନତୋଽପିବା ।
ଶୂଦ୍ରାଣାମୁପଦେଶନ୍ତୁ ଦଦ୍ୟାତ୍ ସ ନରକଂ ବ୍ରଜେତ୍ । (ଗର୍ଗ)

ଅର୍ଥ ।—ଯେଉଁ ଗ୍ରହବିପ୍ର ଲୋଭ, ମୋହ ବା ଅଜ୍ଞାନବଶତଃ ଶୂଦ୍ରକୁ ଜ୍ୟୋତିଷଶାସ୍ତ୍ର ଉପଦେଶ ପ୍ରଦାନ କରେ, ସେ ବ୍ୟକ୍ତି ନରକଗାମୀ ହୁଏ ।

### ଜ୍ୟୋତିର୍ବିଦଙ୍କର ଭରଣ-ପୋଷଣ ରାଜାଙ୍କର କର୍ତ୍ତବ୍ୟ ।

ବୈଦ୍ୟଃ ପୁରୋହିତୋ ମନ୍ତ୍ରୀ ଦୈବଜ୍ଞଶ୍ଚ ଚତୁର୍ଥକଃ ।
ଏତେ ରାଜ୍ଞା ସଦା ପୋଷ୍ୟାଃ କୃଚ୍ଛ୍ରେଣାପି ସ୍ଥିତ୍ୟୈ ଯଥା ॥

ଅର୍ଥ ।—କୃଚ୍ଛ୍ରାବସ୍ଥାରେ ସୁଦ୍ଧା ବୈଦ୍ୟ, ପୁରୋହିତ, ମନ୍ତ୍ରୀ ଓ ଦୈବଜ୍ଞ ଏହି ଚାରିଜଣଙ୍କୁ ରାଜାମାନଙ୍କର ପ୍ରତିପାଳନ କରିବା ଅବଶ୍ୟ କର୍ତ୍ତବ୍ୟ ।

ରାଜା ଚ ସର୍ବେଷୁ କାର୍ଯ୍ୟେଷୁ ସାମ୍ବତ୍ସରାଧୀନଃ ସ୍ୟାତ୍ । [illegible]

ଅର୍ଥ ।—ରାଜାମାନେ ସମସ୍ତ କାର୍ଯ୍ୟରେ ଜ୍ୟୋତିଷଙ୍କର ଅଧୀନରେ ଥିବେ ।

### ଗ୍ରହବିପ୍ରଙ୍କୁ ଦର୍ଶନକଲେ ପୁଣ୍ୟଲାଭ ।

ବୈଦ୍ୟଃ ପୁରୋହିତୋ ମନ୍ତ୍ରୀ ଦୈବଜ୍ଞଶ୍ଚ ଚତୁର୍ଥକଃ ।
ପ୍ରାତଃକାଳେ ତୁ ଦ୍ରଷ୍ଟବ୍ୟା ନିତ୍ୟଂ କଲ୍ୟାଣମିଚ୍ଛତା ॥ ରାଜମାର୍ତ୍ତଣ୍ଡ

ଅର୍ଥ ।—ଯେଉଁ ବ୍ୟକ୍ତି ପ୍ରାତଃକାଳରେ ବୈଦ୍ୟ, ପୁରୋହିତ, ମନ୍ତ୍ରୀ ଓ ଦୈବଜ୍ଞଙ୍କୁ ଦର୍ଶନ କରନ୍ତି, ପ୍ରତିଦିନ ତାଙ୍କର କଲ୍ୟାଣ ହୋଇଥାଏ । (ରାଜମାର୍ତ୍ତଣ୍ଡ ଗ୍ରନ୍ଥର ୧ମ ଅଧ୍ୟାୟରେ ଅନେକ ଗ୍ରହଣୀୟ ପ୍ରମାଣ ରହିଅଛି ।)

ଏବମ୍ବିଧସ୍ୟ ଶୁଦ୍ଧ ଜୈତ୍ର ଶାସ୍ତ୍ର ସ୍ୱରୂପ ବକ୍ତୁଃ ଖଲୁ ଦର୍ଶନଂ ବୈ
ନିହନ୍ତ୍ୟଶେଷଂ କଲୁଷଂ ଜନାନାଂ ସଦ୍ଧିଦନ୍ତଂ ଧର୍ମ୍ମ ସୁଖାଶ୍ରୟଂ
ସ୍ୟାତ୍ । (ବୃହତ୍‌ସଂହିତା)

ପ୍ରାତରୁତ୍ଥାୟ ଯଃ ପଶ୍ୟେତ୍ ଗ୍ରହବିପ୍ରଂ ମହେଶ୍ୱର ।
ନ ଲିପ୍ତୋ ଦୁଷ୍ଟରତ୍ନେନ ବଦନେ ଗୃହ୍ୟତଂ ଫଳଂ । ଗ୍ରହଯାମଳ

ଅର୍ଥ ।—ହେ ମହେଶ୍ୱର ! ଯେ କୌଣସି ବ୍ୟକ୍ତି ପ୍ରାତଃ କାଳରେ ଗାତ୍ରୋତ୍ଥାନ କରି ଗ୍ରହବିପ୍ରଙ୍କୁ ଦର୍ଶନ କରେ, ତାହାକୁ ଦୁଷ୍ଟ, ଅରିଷ୍ଟ ପ୍ରଭୃତି ସ୍ପର୍ଶକରି ପାରେନାହିଁ ଏବ

ଯେଉଁବ୍ୟକ୍ତି ଭକ୍ତିସହକାରେ ଗ୍ରହବିପ୍ରଙ୍କୁ ପ୍ରଣାମ କରେ, ତାହାର ଅକ୍ଷୟଫଳ ଲାଭହୁଏ ।

ଗ୍ରହବିପ୍ରଙ୍କୁ ଭୂମି ଦାନ ଦେବାର ଫଳ ।

ଗ୍ରାମଂ ଯଚ୍ଛତି ଯୋ ଭକ୍ତ୍ୟା ଗ୍ରହବିପ୍ରାୟ ଭୂପତେ ।
ଯାବନ୍ତୋ ରେଣବଃ ପୃଥ୍ୱ୍ୟାଃ ଯାବନ୍ତୋ ବୃଷ୍ଟିବିନ୍ଦବଃ । ବହ୍ନିଃ

ଅର୍ଥ ।—ଯେଉଁବ୍ୟକ୍ତି ଭକ୍ତିସହକାରେ ଗ୍ରହବିପ୍ରଙ୍କୁ ଗ୍ରାମ-ଦାନ କରନ୍ତି, ପୃଥିବୀର ରେଣୁ ବା ବୃଷ୍ଟିଧାର ସ୍ୱରୂପ ଅସଂଖ୍ୟ ପୁଣ୍ୟ ହୋଇଥାଏ ।

ଗୋଦାନଂ ଭୂମିଦାନଞ୍ଚ ସ୍ୱର୍ଣ୍ଣଦାନଂ ବିଶେଷତଃ ।
ଗ୍ରହଣେ କ୍ଲେଶନାଶାୟ ଦୈବଜ୍ଞାୟ ନିବେଦୟେତ୍ । (ସ୍କନ୍ଦପୁରାଣ)

ଅର୍ଥ ।—ଗ୍ରହଣ ଦୋଷ ଶାନ୍ତି ନିମନ୍ତେ ଦୈବଜ୍ଞମାନଙ୍କୁ ଗୋଦାନ, ଭୂମିଦାନ ସ୍ୱର୍ଣ୍ଣଦାନ ପ୍ରଦାନ କରିବ ।

ଗ୍ରହବିପ୍ର-ବିହୀନ-ଦେଶରେ ବାସକରିବା ନିଷେଧ ।

ଅଦ୍ରୁଷ୍ଟପା ଯଥା ରାତ୍ରିରଣାଦିତ୍ୟଂ ଯଥା ନଭଃ ।
ତଥାଽସାମ୍ବତ୍ସରୋ ରାଜା ଭ୍ରମତ୍ୟନ୍ଧ ଇବାଧ୍ୱନି । (ଗର୍ଗ)

ଅର୍ଥ ।—ପ୍ରଦୀପହୀନ ରାତି ଓ ସୂର୍ଯ୍ୟହୀନ ଆକାଶ ଯେପରି ଅନ୍ଧକାରମୟ, ସେହିପରି ରାଜ୍ୟାଧିପତି ଗ୍ରହବିପ୍ରବିହୀନ ହେଲେ ଅନ୍ଧପ୍ରାୟ ଭ୍ରମିବାକୁ ହୁଏ ।

ନ ସାମ୍ବତ୍ସରକେ ଦେଶେ ବସ୍ତବ୍ୟଂ ଭୂତିମିଚ୍ଛତା ।
ଚକ୍ଷୁର୍ଭୂତୋ ହି ଯତ୍ରୈଷ ପାପଂ ତତ୍ର ନ ବିଦ୍ୟତେ । (ବହ୍ନି)

ଅର୍ଥ ।—ଯେଉଁ ଦେଶରେ ସାମ୍ବତ୍ସର (ଗ୍ରହବିପ୍ର) ନାହାନ୍ତି, ମଙ୍ଗଳେଚ୍ଛୁକ ଲୋକମାନଙ୍କର ସେ ଦେଶରେ ବାସ କରିବା କର୍ତ୍ତବ୍ୟ ନୁହେଁ । (ଚକ୍ଷୁସ୍ୱରୂପ) ଗ୍ରହବିପ୍ରମାନେ ଯେଉଁସ୍ଥାନରେ ଅବସ୍ଥାନ କରନ୍ତି, ସେସ୍ଥାନରେ କୌଣସି ପାପ ଥାଏନାହିଁ ।

ଭଦ୍ରବସ୍ତାଙ୍ଘ୍ରିରେଣୁଷୁ ଗ୍ରାମେ ବା ଯସ୍ୟ ସଦ୍ମନି ।
ନୃପତେ ତସ୍ୟ ଦେହସ୍ଥଂ ସର୍ବପାପଂ ବିନଶ୍ୟତି ॥

ଅର୍ଥ ।—ଯେଉଁ ରାଜାଙ୍କ ଗ୍ରାମରେ ବା ଗୃହରେ ଭଦ୍ରବସ୍ତଙ୍କର ପଦଧୂଳି ପଡ଼େ, ତାଙ୍କ ଦେହରୁ ସବୁପ୍ରକାର ପାପରାଶି ବିନଷ୍ଟ ହୁଏ ।

ବୈଷ୍ଣବଙ୍କୁ ଅନାଦର କରିବା ମହାପାପ ।

ଗତଶ୍ରୀର୍ଗଣକାନ୍ ଦ୍ୱେଷ୍ଟି ଗତାୟୁଷ୍ଟ ଚିକିତ୍ସକାନ୍ ।
ଗତଶ୍ରୀଶ୍ଚ ଗତାୟୁଶ୍ଚ ବ୍ରାହ୍ମଣାନ୍ ଦ୍ୱେଷ୍ଟି ଭାରତ ॥ (ମହାଭାରତ)

ଅର୍ଥ ।—ଗଣକ ବ୍ରାହ୍ମଣଙ୍କୁ ନିନ୍ଦାକଲେ ଶ୍ରୀନାଶ ହୁଏ, ଚିକିତ୍ସକ ନିନ୍ଦାକଲେ ଆୟୁନାଶ ହୁଏ, ଅନ୍ୟାନ୍ୟ ବ୍ରାହ୍ମଣଙ୍କୁ ନିନ୍ଦାକଲେ ଆୟୁ ଓ ଧନନାଶ ହୁଅଇ ।

ଯୋ ଭଦ୍ରବ୍ରାହ୍ମଣାଂ ଦୃଷ୍ଟ୍ବା ବ୍ରୂତେ କୁବଚନଂ ଯଦି ।
ରୋଗଶୋକାନ୍ୱିତଃ ସୋଽପି ଲଭତେ ନାରକୀଂ ବ୍ୟଥାମ୍ ॥
(ବ୍ରହ୍ମବୈବର୍ତ୍ତ ।)

ଅର୍ଥ ।—ଯେଉଁବ୍ୟକ୍ତି ଭଦ୍ରବସ୍ତଙ୍କୁ ଦେଖି କୁବଚନ କୁହେ, ସେ ରୋଗ-ଶୋକ ପ୍ରାପ୍ତ ହୋଇ ଯନ୍ତ୍ରଣା ଭୋଗକରେ ।

ସମ୍ମାନ୍ୟଃ ପୂଜନୀୟଶ୍ଚ ବିପ୍ରାଣାମପି ସର୍ବଦା ।
ଯଃ କରୋତ୍ୟବମାନଞ୍ଚ ବ୍ରାହ୍ମଣାନାଂ ଭୋଜକେ ॥
ତସ୍ୟାହଂ ରୋଷମେତ୍ୟାଶୁ କୁଲଂ ହନ୍ମି ସମନ୍ତତଃ ।
ପ୍ରିୟୋ ମେ ଭୋଜକୋ ନିତ୍ୟଂ ଯଥା ତ୍ୱଂ ବିନତାସୁତ ॥
(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୧୭ ଅଃ)

ଅର୍ଥ ।—(ସୂର୍ଯ୍ୟଦେବ କହୁଅଛନ୍ତି) ମୁଁ ଯେପରି, ଭୋଜକ ବ୍ରାହ୍ମଣମାନେ ସେହିପରି ; ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କଠାରୁ ସମ୍ମାନନୀୟ ଓ ପୂଜନୀୟ । ଭୋଜକମାନଙ୍କ ପ୍ରତିକୁ ଯେଉଁବ୍ୟକ୍ତି

ଅପମାନନା କରେ, ମୁଁ ତୁଷ୍ଟହୋଇ ତାହାର ବଂଶ ଧ୍ୱଂସକରେଁ । ହେ ବୈନତେୟ: ତୁମ୍ଭେ ଯେପରି ମୋର ପ୍ରିୟ, ଜ୍ୟୋତିଷ ବ୍ରାହ୍ମଣମାନେ ସେହିପରି ମୋର ଅତ୍ୟପ୍ରିୟ ଅଟନ୍ତି ।

ବେଦାଙ୍ଗୋପାଙ୍ଗ କୁଶଲଂ ହୋରାଗଣିତ ନୈଷ୍ଠିକଂ ।
ଯୋ ନ ପୂଜୟତେ ରାଜନ୍ ସ ନାଶ ମୁପଗଚ୍ଛତି ।

ଅର୍ଥ ।—ହେ ରାଜନ୍ ! ହୋରା-ଗଣିତ ନୈଷ୍ଠିକ, ଅଙ୍ଗ ଓ ଉପାଙ୍ଗକୁଶଳ ଜ୍ୟୋତିଷଙ୍କୁ ଯେଉଁ ରାଜା ପୂଜା ନ କରନ୍ତି (ବା ଅନାଦର କରନ୍ତି), ସେହି ରାଜା ବିନାଶ ପ୍ରାପ୍ତ ହୁଅନ୍ତି ।

## ଗ୍ରହବିପ୍ରଙ୍କ ଶରୀରରେ ଗ୍ରହଙ୍କର ସ୍ଥାନନିର୍ଣ୍ଣୟ ।

ଗ୍ରହାଧୀନଂ ଜଗତ୍ ବ୍ରାହ୍ମନ୍ ମନ୍ତ୍ରାଧୀନା ଅପିଗ୍ରହାଃ ।
ତନ୍ମନ୍ତ୍ରା ଗଣକାଧୀନା ଗଣକାସ୍ତେନ ତେ ଗ୍ରହାଃ ॥ ବ୍ରହ୍ମସିଦ୍ଧାନ୍ତ

ଅର୍ଥ ।—ହେ ବ୍ରାହ୍ମନ୍ ! ଏହି ଚରାଚର ବିଶ୍ୱ ଗ୍ରହମାନଙ୍କର ଅଧୀନ, (ଅର୍ଥାତ୍ ଗ୍ରହମାନଙ୍କ ଦ୍ୱାରା ନିଖିଳ ଜଗତ୍ ପରିଚାଳିତ ହେଉଅଛି ।) ସେହି ଗ୍ରହମାନେ ମନ୍ତ୍ରର ଅଧୀନ ଏବଂ ସେମାନଙ୍କ ମନ୍ତ୍ରସବୁ ଗଣକ ବା ଗ୍ରହବିପ୍ରମାନଙ୍କ ଅଧୀନ ; ଅତଏବ ଗ୍ରହବିପ୍ର ଗ୍ରହସ୍ୱରୂପ ଅଟନ୍ତି ।

ଶୀର୍ଷେ ସୂର୍ଯ୍ୟୋ ବିଧୁର୍ନେତ୍ରେ ମୁଖେ ଭୌମୋ ହୃଦି ବୁଧଃ ।
ନାଭିଦେଶେ ଗୁରୁଶ୍ଚୈବ ପୃଷ୍ଠଦେଶେ ଚ ଭାର୍ଗବଃ ॥
ଶନିର୍ଜଙ୍ଘାସ୍ଥିତଶ୍ଚୈବ ରାହୁକେତୁ ପଦଦ୍ୱୟେ ।
ଗ୍ରହବିପ୍ର ଶରୀରେଷୁ ଗ୍ରହାଃ ସ୍ୱଃ ସ୍ୱଦିବ୍ୟଜଟାଃ ॥
[ଇତି ମନ୍ତ୍ରେଣ ବ୍ରହ୍ମସ୍ତବ ଶିରପାଦ ସ୍ପର୍ଶନ ଜପେତ୍] ଗ୍ରହଯାମଳ

ଅର୍ଥ ।—ଗ୍ରହବିପ୍ରଙ୍କ ମସ୍ତକରେ ସୂର୍ଯ୍ୟ, ଚକ୍ଷୁରେ ଚନ୍ଦ୍ର, ମୁଖରେ ମଙ୍ଗଳ, ହୃଦୟରେ ବୁଧ, ନାଭିଦେଶରେ ବୃହସ୍ପତି,

ମୁଣ୍ଡ, ପୃଷ୍ଠଦେଶରେ, ଜଙ୍ଘ ଜଙ୍ଘରେ ଏବଂ ପଦଦ୍ୱୟରେ ସର୍ବ-
ଦେବ ଅବସ୍ଥିତ ଅଛନ୍ତି ।

ଗାୟତ୍ରୀଙ୍କୁ ପ୍ରଣାମ କରିବାର ଫଳ ।

ତେଷାଂ ନିରଗ୍ନି ଭୂଦେବେ ପ୍ରଣାମେ ଯତ୍ ଫଳଂ ଲଭେତ୍ ।
ଗାୟତ୍ରୀଜ୍ଞ ବିପ୍ରଦେବେଷୁ ତତ୍ଫଳାଷ୍ଟାଧିକଂ ଗୁଣଂ ।
ତସ୍ୟ ଲକ୍ଷଗୁଣଂ ଦେବ ଫଳଂ ସ୍ୟାତ୍ ଗାୟତ୍ରୀଷୁରେ ।
ସାଗ୍ନିକ ବ୍ରାହ୍ମଣେ ତସ୍ୟ ପ୍ରଣାମେ କୋଟିକଂ ଭବେତ୍ । ଗୁହ୍ୟାମଳ

ଅର୍ଥ ।—ନିରଗ୍ନି ବ୍ରାହ୍ମଣଙ୍କୁ ପ୍ରଣାମ କଲେ ଯେଉଁଫଳ ଲଭନ୍ତିଏ, ଗାୟତ୍ରୀଜ୍ଞ ବ୍ରାହ୍ମଣଙ୍କୁ ପ୍ରଣାମକଲେ ତାହାର ଅଠଗୁଣ ଫଳ, ଗାୟତ୍ରୀ ବ୍ରାହ୍ମଣଙ୍କୁ ପ୍ରଣାମ କଲେ ତାହାର ଲକ୍ଷଗୁଣ ଫଳ ଏବଂ ସାଗ୍ନିକ ବ୍ରାହ୍ମଣଙ୍କୁ ପ୍ରଣାମକଲେ ତହୁଁର କୋଟିଗୁଣ ଫଳ ଲାଭ ହୁଅଇ ।

ଗାୟତ୍ରୀମାନେ କ୍ଷତ୍ରିୟାଦି ବର୍ଣ୍ଣଙ୍କୁ ପ୍ରଣାମକଲେ ପ୍ରାୟଶ୍ଚିତ୍ତ ।

ଋତ୍ୱିଜୋ ଦୂରତୋ ଦୃଷ୍ଟ୍ୱା ବ୍ରାହ୍ମଣଂ ଭୂବ ସଙ୍ଗତଃ ।
ପ୍ରଣମେଦ୍ୱିଧିବଦ୍ଭକ୍ତ୍ୟା କ୍ଷତ୍ରିୟାଦ୍ୟର୍ଣ୍ଣ ବର୍ଜୟେତ୍ ।
ବିପ୍ରଂ ଦୃଷ୍ଟ୍ୱା ଦ୍ୱିଜାତସ୍ତୁ ନତଂ ପ୍ରଣତମେବ ବା ।
କୁର୍ଯ୍ୟାତ୍ ଚନ୍ଦ୍ରତଃ ଯୋଽପି ନରକସ୍ୟ ବସ୍ତୁଦେହତ ।
ଅବଶ୍ୟଂ କ୍ଷତ୍ରିୟାଦଃ ପ୍ରଣମେତ୍ ଦ୍ୱିଜଭୂଷଣମ୍ ।
ତଦ୍ୱଦେବ ହି ବିପ୍ରସ୍ୟ ନାନ୍ୟସ୍ୟ ଚ କଥଞ୍ଚନେତ । (ମୁଣ୍ଡମାଳାତନ୍ତ୍ର

"ଗାୟତ୍ରୀବ୍ରାହ୍ମଣସ୍ୟାପି କ୍ଷତ୍ରିୟାଭିବାଦନେ ପ୍ରାୟଶ୍ଚିତ୍ତମାହ ।
ବ୍ରାହ୍ମଣ ଇତ୍ୟନୁବୃତ୍ତୌ ମିତାକ୍ଷରାୟାଂ । ହାରୀତଃ ।
କ୍ଷତ୍ରିୟସ୍ୟାଭିବାଦନେ ଅହୋରାତ୍ର ମୁପବସେତ୍ତଥା ।
ବୈଶ୍ୟସ୍ୟାପି ଶୂଦ୍ରସ୍ୟାଭିବାଦନେ ତ୍ରିରାତ୍ର ମୁପବସେତ ।

ଅର୍ଥ ।—ଗାୟତ୍ରୀ ବ୍ରାହ୍ମଣ କ୍ଷତ୍ରିୟାଦି ଜାତିକୁ ଅଭିବାଦନ

କଲେ ପ୍ରାୟଶ୍ଚିତ୍ତାର୍ହ । ତାହାର ମୂଳ କହୁଅଛନ୍ତି,—କ୍ଷତ୍ରିୟଙ୍କୁ ଅଭିବାଦନକଲେ ଏକଦିନ ଏବଂ ବୈଶ୍ୟ ଓ ଶୂଦ୍ରଙ୍କୁ ଅଭିବାଦନ କଲେ ତିନଦିନ ଉପବାସ ରହି ଶୁଦ୍ଧ ହେବ ।

ଏହି ସମସ୍ତ ମାହାତ୍ମ୍ୟ ପ୍ରମାଣମାନଙ୍କରୁ ବୁଝାଗଲା ଯେ, ଭୋଜକବିପ୍ରମାନେ ଉତ୍କୃଷ୍ଟ ବ୍ରାହ୍ମଣ ଅଟନ୍ତି । ତାହା ବ୍ୟାସଃ ମଧ୍ୟ କହୁଅଛନ୍ତି,—"ଅଗ୍ନିହୋତ୍ରୀ ତଥା ବେଦୀ ଦୈବଜ୍ଞଃ ଶ୍ରୋତ୍ରିୟସ୍ତୁ ଦ୍ୱିଜାଃ ।" ଅର୍ଥାତ୍ ଅଗ୍ନିହୋତ୍ରୀ, ବୈଦିକ, ଦୈବଜ୍ଞ ଓ ଶ୍ରୋତ୍ରିୟ ଏମାନେ ଉତ୍କୃଷ୍ଟ ବ୍ରାହ୍ମଣ ଅଟନ୍ତି ।

# ନବମ ଅଧ୍ୟାୟ ।

## ଶ୍ରାଦ୍ଧାଦି ପ୍ରତ୍ୟେକ କାର୍ଯ୍ୟରେ ଭୋଜକବିପ୍ରଙ୍କୁ ବରଣ କରିବା ଶାସ୍ତ୍ରୋଚିତ ।

ମେଧାତିଥେର୍ଯଦା ସୂର୍ଯ୍ୟଃ ଶ୍ରାଦ୍ଧାଦୌ ଯଜ୍ଞକର୍ମଣି ।
ଶାକଦ୍ୱୀପୀଦ୍ୱିଜୋ ତତ୍ର ସ୍ଥାପନୀୟଃ ପ୍ରଯତ୍ନତଃ ॥
ଶାକଦ୍ୱୀପୀ ଦ୍ୱିଜୋ ଯତ୍ର ତତ୍ର ସୂର୍ଯ୍ୟୋ ନ ସଂଶୟଃ ।
ସୂର୍ଯ୍ୟୋଽଗ୍ନିର୍ବ୍ରାହ୍ମଣା ଯତ୍ର ତତ୍ର ଯଜ୍ଞାଦିକ କ୍ରିୟା ॥
ଲୁପ୍ତେ ସୂର୍ଯ୍ୟେ ବହିସ୍ଥାନେ ଶାକଦ୍ୱୀପୀ ଦ୍ୱିଜ ସ୍ଥିତେ ।
ତତ୍ର ଯଜ୍ଞାଦିକଂ କର୍ମ କରଣୀୟଂ ନ ଦୋଷଭାକ୍ ॥ ସାମ୍ବପୁରାଣ

ଅର୍ଥ ।—ଶ୍ରାଦ୍ଧାଦି ଯଜ୍ଞକାର୍ଯ୍ୟରେ ସୂର୍ଯ୍ୟଦେବ ଯଦ୍ୟପି ମେଧାବୃତ ହୁଅନ୍ତି, ତାହାହେଲେ ସେହିସ୍ଥଳେ ଶାକଦ୍ୱୀପୀ ବ୍ରାହ୍ମଣ (ଭୋଜକବିପ୍ର)ଙ୍କୁ ଅତି ଯତ୍ନର ସହିତ ସ୍ଥାପନ କରିବ ; କାରଣ ଶାକଦ୍ୱୀପୀ ଦ୍ୱିଜ ଯେଉଁସ୍ଥାନରେ ଥାଆନ୍ତି, ସୂର୍ଯ୍ୟଦେବ

ସେହିସ୍ଥାନରେ ରହିଥାନ୍ତି । ସୂର୍ଯ୍ୟ, ଅଗ୍ନି ଓ ବ୍ରାହ୍ମଣ ଯେଉଁସ୍ଥାନରେ ଥିବେ ସେ ସ୍ଥାନରେ ଯଜ୍ଞାଦିକ୍ରିୟା କରିବା କର୍ତ୍ତବ୍ୟ । ସୂର୍ଯ୍ୟଦେବ ଲୁପ୍ତ (ମେଘାବୃତ) ବା ଅସ୍ତହେଲେ ଓ ଅଗ୍ନି ହୀନ ହେଲେ ଯଜ୍ଞାଦି କାର୍ଯ୍ୟରେ ଯେଉଁଦୋଷ ହୁଏ, ଶାକଦ୍ୱୀପୀ ବ୍ରାହ୍ମଣଙ୍କର ଉପସ୍ଥିତିରେ ସେ ଦୋଷ ସ୍ପର୍ଶ କରି ପାରେନାହିଁ ।

ପ୍ରପୂଜ୍ୟ ଗ୍ରହଭୂପେଶ ମଂ ଶୁମନ୍ତଂ ତ୍ରିଲୋଚନ ।
ଶୀରଭୂ(୧) ପୂଜୟିତ୍ୱାତୁ ତତଃ ଶ୍ରାଦ୍ଧଂ ପ୍ରକଳ୍ପୟେତ୍ ।
ପଞ୍ଚଭିର୍ବ୍ରାହ୍ମଣୈ ର୍ଦେବ ଦିବ୍ୟୈ ର୍ଭୌମସ୍ତୁ ସୁବ୍ରତ ।
ମଗସଙ୍ଘୋ ତତ୍ର ଦିବ୍ୟୌ ବ୍ରାହ୍ମଣୌ ପରିକଳ୍ପୟେତ୍ ।
ତ୍ରୀନେତୁ ବ୍ରାହ୍ମଣାନ୍ ଭୌମାନ୍ ପ୍ରତିଲ୍ୟାନକସୂଦନ ।
କୁର୍ଯ୍ୟାଦେବ ତତଃ ଶ୍ରାଦ୍ଧଂ ପାର୍ବଣଂ ଭାସ୍କରପ୍ରିୟଂ ।
ଶ୍ରାଦ୍ଧେତ୍ୱେଥ ସମାପ୍ତେ ତୁ ଦଦ୍ୟାତ୍ ପିଣ୍ଡନ୍ତୁ ମଧ୍ୟମଂ ।
ପୁରତୋଦେବଦେବସ୍ୟ ସ୍ଥିତା ମନ୍ତ୍ରେଣ ସୁବ୍ରତ ।

(ଭବିଷ୍ୟପୁରାଣ ବ୍ରାହ୍ମପର୍ବ, ୧୬ଅ ୬--୯)

ଅର୍ଥ ।—ହେ ତ୍ରିଲୋଚନଣ ଗ୍ରହଶ୍ରେଷ୍ଠ ଅଂଶୁମାନ ସୂର୍ଯ୍ୟ ଦେବଙ୍କୁ ଓ ଧୂପ-ପୂଜା କରିତଃ ଶ୍ରାଦ୍ଧାନୁଷ୍ଠାନ କରିବ । ହେ ସୁବ୍ରତ, ଦିବ୍ୟ ଓ ଭୌମ ବ୍ରାହ୍ମଣ ପାଞ୍ଚଜଣ ଗ୍ରହଣ କରିବ । ତନ୍ମଧ୍ୟରେ ଦୁଇଟି ମଗସଙ୍ଘକ ଦିବ୍ୟବ୍ରାହ୍ମଣ (ଗ୍ରହବିପ୍ର) ଓ ଭୌମ (ଅନ୍ୟଶ୍ରେଣୀୟ) ବ୍ରାହ୍ମଣ ତିନୋଟି ସ୍ଥାପନ କରିବ; (ହେ ଅରିନିସୂଦନ,) ସୂର୍ଯ୍ୟପ୍ରିୟ ପାର୍ବଣଶ୍ରାଦ୍ଧ କରିବ । ପରେ ଶ୍ରାଦ୍ଧ ସମାପ୍ତ ହେଲେ ସୂର୍ଯ୍ୟଦେବଙ୍କ ସାକ୍ଷାତରେ ମନ୍ତ୍ରପାଠ କରି ମଧ୍ୟମ ପିଣ୍ଡ ପ୍ରଦାନ କରିବ ।

---

(୧) "ଶୀପଂ" ଇତି ପାଠାନ୍ତର ।

ଭବିଷ୍ୟପୁରାଣରେ ସାମ୍ବଙ୍କ ପ୍ରତି ନାରଦଙ୍କର ଉକ୍ତି, ଯଥା :—

ଶାକଦ୍ୱୀପାଦିହାନୀତା ଯେ ମଗା ବେଦ-ପାରଗାଃ ।
ତେଷାଂ ସନ୍ଦର୍ଶନାତ୍ ଦାନାତ୍ ପୂଜନାତ୍ ସର୍ବକର୍ମସୁ ।
ପାପରାଶି କ୍ଷୟଂଯାତି ଧାମ-ପ୍ରାପ୍ତିଶ୍ଚ ଜାୟତେ ।

ଅର୍ଥ ।—ଶାକଦ୍ୱୀପରୁ ଯେଉଁ ବେଦପାରଗ ମଗ ଅର୍ଥାତ୍ ଗ୍ରହବିପ୍ରମାନେ ଆସିଅଛନ୍ତି, ସେମାନଙ୍କୁ ସର୍ବକର୍ମରେ ଦର୍ଶନ, ଦାନ ଓ ପୂଜାକଲେ ପାପରାଶି ଦୂରୀଭୂତ ହୁଏ ଏବଂ ଅଭୀଷ୍ଟ ପୂର୍ଣ୍ଣହୁଏ ।

ଯାଗେ ବିବାହମେତେନ ବ୍ରତଦାନହୋମେ
ଶାସ୍ତ୍ରାଦିପୁଂସବନଜନ୍ମାନ୍ତ୍ୟାର୍ଘ୍ୟକାଲେ ।
ଯଃ ପୂଜୟେତ୍ ଗ୍ରହଗଣଂ ଗଣକାବତୀର୍ଣ୍ଣଂ
ଲଭନ୍ତି ସମଫଳଂ ଲଭତେ ଧ୍ରୁବଂସଃ । (ସ୍କନ୍ଦମାର୍କଣ୍ଡ ୧।–)

ଅର୍ଥ ।—ଯାଗାଦି କାର୍ଯ୍ୟ, ବିବାହ, ଗଢ଼ବନ୍ଧ ବିଷୟ, ବ୍ରତଦାନ କାର୍ଯ୍ୟ, ଉପନୟନ, ହୋମକର୍ମ, ଶାସ୍ତ୍ରୋକ୍ତ ପୁଂସବନ, ଗର୍ଭାଧାନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏବଂ ପୁରଶ୍ଚରଣାନ୍ତ ପ୍ରଭୃତି କାର୍ଯ୍ୟରେ ଓ ଅର୍ଘ୍ୟଦାନ କାଳରେ ଗଣକ ଅର୍ଥାତ୍ ଗ୍ରହବିପ୍ରଙ୍କୁ ଯେଉଁମାନେ ପୂଜା କରନ୍ତି, ସେମାନେ ସେହି କର୍ମରେ ଫଳଲାଭ କରନ୍ତି ।

ଯଜ୍ଞେ ଦାନେ ବିବାହେଚ ବ୍ରତେ ପୁଂସବନେ ତଥା ।
ଗ୍ରହପୂଜାଚ ହୋମାଶ୍ଚ କର୍ତ୍ତବ୍ୟାଶ୍ଚ ଗ୍ରହଦ୍ୱିଜୈଃ ।
ଶାନ୍ତେ ହୋମେଚ ମାଙ୍ଗଲ୍ୟେ ସର୍ବତ୍ର ବରଣୀ ବୁଧାଃ ।
( ବୃହତ୍ ମନୁସଂହିତା ୧୩ଶ ପରିଚ୍ଛେଦ । )

ଅର୍ଥ ।—ଯଜ୍ଞ, ଦାନ, ବିବାହ, ବ୍ରତ, ପୁଂସବନ, ଗ୍ରହପୂଜା ଓ ଶତଯଜ୍ଞାଦି କାର୍ଯ୍ୟରେ ଗ୍ରହଙ୍କ କାର୍ଯ୍ୟସମୂହ ଗ୍ରହବିପ୍ରଙ୍କ ଦ୍ୱାରା

ସମ୍ମାନ କରିବେ । ଶ୍ରାଦ୍ଧ, ହୋମ ଓ ଅନ୍ୟାନ୍ୟ ଦୈବକାର୍ଯ୍ୟରେ ଗ୍ରହବିପ୍ରଙ୍କୁ ସର୍ବଦା ବରଣ କରିବ ।

ପୂଜାସ୍ଥାନେ ବରସେବେ ଶ୍ରାଦ୍ଧସ୍ଥାନେ ଉଟେଷ୍ଟିତ ।
ଉପଯୁକ୍ତ ତେ ସର୍ବେ ବ୍ରାହ୍ମଣାଗ୍ରେ ଚ ପୂଜିତ ।

"ଇତି ମନ୍ତ୍ରଷମହିଳାଦିନ୍ତ ଧୃତ ବଚନ, ସନ୍ଦୋହାତ୍ ଦୈବପୈତ୍ର୍ୟ କାର୍ଯ୍ୟେଷୁ ତେଷାଂ ଗ୍ରହବିପ୍ରାଣାଂ ପୂଜ୍ୟତେତି ଶାସ୍ତ୍ରସିଦ୍ଧତ୍ୱାତ୍ ।"

ଗ୍ରହବିପ୍ରସ୍ତ୍ୱାଚାର୍ଯ୍ୟୋ ହୋତା ସାତ୍ତ୍ୱିକ ଏବ ଚ ।
ବରଣୀୟାଃ ସଦସ୍ୟାସ୍ତ କର୍ମଣ୍ୟେତାନ୍ ଯାଜ୍ଞିକା ।

(ସାଧୁସଜ୍ଜନ ଚନ୍ଦ୍ରୋଦ୍ଧୃତ ବଚନ ।)

ଏହି ସମସ୍ତ ପ୍ରମାଣ ଦ୍ୱାରା ଜଣାଯାଉଅଛି ଯେ, ପ୍ରତ୍ୟେକ କର୍ମରେ ଗ୍ରହବିପ୍ରଙ୍କୁ ବରଣ କରିବା ଶାସ୍ତ୍ରବିହିତ । ଏ ସ୍ଥାନର ଗ୍ରହବିପ୍ରମାନେ ମଧ୍ୟ ପ୍ରତ୍ୟେକ କର୍ମରେ ଜଜମାନର ଦ୍ୱାରସ୍ଥ ହୋଇ ମାଙ୍ଗଲ୍ୟାଦି କାର୍ଯ୍ୟ ସମାଧା କରିଆନ୍ତି । ସୁତରାଂ ସମସ୍ତଙ୍କର ସ୍ମରଣ ରଖିବା ଉଚିତ ଯେ, କର୍ମକର୍ତ୍ତା ଭ୍ରମବଶତଃ ଗ୍ରହବିପ୍ରଙ୍କୁ ବରଣ ନକଲେ ସମସ୍ତ କର୍ମ ପଣ୍ଡ ହୁଏ ।

---

## ଦଶମ ଅଧ୍ୟାୟ ।

ଦୈବଜ୍ଞ ପୁରୋହିତ ହେବାର ଯୋଗ୍ୟ ।

ଦୈବଜ୍ଞଂ ବରଦେବିତ୍ୟଂ କ୍ରିୟାର୍ଥଂ ବସ୍ତ୍ରଚେତସା ।
ପୁରୋହିତଞ୍ଚ କର୍ତ୍ତବ୍ୟଂ ଦୈବଜ୍ଞମୃତଘୋଦଧଂ ।

(ହରିବଂଶ, ଦେବୀମାହାତ୍ମ୍ୟ ।)

ଅର୍ଥ ।—ପ୍ରତିଦିନ ଜପ ହୋମାନ୍ତେ ନିୟମିତରୂପେ ଦୈବଜ୍ଞ (ଗ୍ରହବିପ୍ର)ଙ୍କୁ ବରଣ କରିବ । ଶାସ୍ତ୍ରଜ୍ଞ ବିଦ୍ୟାନ ଦୈବଜ୍ଞଙ୍କୁ ପୁରୋହିତ କରିବ ।

ପୁରୋହିତଞ୍ଚ କୁର୍ବୀତ ଦୈବଜ୍ଞମୁଦିତୋଦିତମ୍ ।
ଦଣ୍ଡନୀତ୍ୟାଞ୍ଚ କୁଶଳମଥର୍ବାଙ୍ଗିରସେ ତଥା ।। (ଯାଜ୍ଞବଲ୍କ୍ୟଃ)

ଅର୍ଥ ।—ଶାସ୍ତ୍ରଜ୍ଞ ବିଦ୍ୟାନ ଦୈବଜ୍ଞ ଏବଂ ଦଣ୍ଡନୀତି ଓ ଅଥର୍ବାଙ୍ଗିରସୋକ୍ତ ଶାନ୍ତ୍ୟାଦି କର୍ମ୍ମରେ ସୁନିପୁଣ ବ୍ୟକ୍ତିଙ୍କୁ ପୌରୋହିତ୍ୟ କର୍ମ୍ମରେ ବୃତ କରାଇବ ।

ସ୍କନ୍ଦପୁରାଣ ରେବାଖଣ୍ଡ ୧୦୫ ଅଧ୍ୟାୟରେ ଲେଖାଅଛି ଯେ, ପୁତ୍ରାର୍ଥିନୀ ରମଣୀ ବେଣୀ ସଙ୍ଗମରେ ଚତୁର୍ବେଦୋକ୍ତ ରୁଦ୍ରସୂକ୍ତରେ ସ୍ନାନ କରିବ । ଗ୍ରହଜ୍ଞ ଦ୍ୱିଜ ଚତୁର୍ବେଦୋକ୍ତ ରୁଦ୍ରସୂକ୍ତ ପାଠକରି ଅଭିଷେକ କର୍ମ ସମ୍ପାଦନ କରିବେ । ହାପରେ ଲେଖାଅଛି ;—

ଏକେନ ପାର୍ଦ୍ର କୁମ୍ଭେନ ଦାକ୍ଷତ୍ୟମଭିଷେଚୟେତ୍ ।
ଦୈବଜ୍ଞେନୈବ ଚୈକେନ ଅଥବା ସାମଗେନ ବା ।
ପଞ୍ଚରତ୍ନସମାଯୁକ୍ତଂ କୁମ୍ଭଂ ତେନୈବ କାରୟେତ୍ । ୧୧ ।

ଅର୍ଥ ।—ଏକଜଣ ଦୈବଜ୍ଞ ଅଥବା ସାମଗଦ୍ୱିଜ (ଗ୍ରହବିପ୍ର) ଅର୍ଦ୍ରକୁମ୍ଭ ଦ୍ୱାରା ଦକ୍ଷିଣର ଅଭିଷେକ କାର୍ଯ୍ୟ କରାଇବ । ଅଭିଷେକ କୁମ୍ଭରେ ପଞ୍ଚରତ୍ନ ରଖିବାକୁ ହେବ । (ଇତ୍ୟାଦି ।)

ଏହାବ୍ୟତୀତ "ବିଷ୍ଣୁଧର୍ମ୍ମୋତ୍ତର"ରେ ମଧ୍ୟ ଗ୍ରହବିପ୍ର ପୁରୋହିତ ହେବାର ପ୍ରମାଣମିଳେ ;—

ଇତି ସ୍ମୃତି ସମ୍ପ୍ରାପ୍ତେ ଋକ୍ଷେ ସାମ୍ବତ୍ସରାଃ ଶୁଭାଃ ।
କାଳେଽଭିଷେଚନଂ କୁର୍ଯ୍ୟାତ୍ ତତ୍ର କାଳଂ ତଥୟୁମିତେ ।
ଯୋଷୟିତ୍ୱା ଜପଂ ଗୃହ୍ୟ ସାମ୍ବତ୍ସର ପୁରୋହିତୌ ।
ପଶ୍ୟେୟୁରତ୍ୟେତ ତଥାନୃପେନ୍ଦ୍ରାଃ
ଦୈବଜ୍ଞ ବାକ୍ୟଂ ନୃପଶ୍ଚ ଚ ଭୂପଃ ।

ସାମ୍ବତ୍ସରସ୍ୟାଥ ସଦସ୍ୟମୁଖ୍ୟାଃ
ସଦସ୍ୟମୁଖ୍ୟାଃ ସପୁରୋହିତଶ୍ଚ । (ଏହି ଅର୍ଥ ପ୍ରବୋଧ ।)

"ରାଜ୍ୟାଭିଷେକ ସମୟରେ ଦୈବଜ୍ଞ ଅର୍ଥାତ୍ ଅଗ୍ରଣୀ ବ୍ରାହ୍ମଣ ସ୍ୱର୍ଣ୍ଣକୁମ୍ଭସ୍ଥିତ ପୁଣ୍ୟତୀର୍ଥାନୀତ ଜଳ କୁଶମୁଷ୍ଟି ଦ୍ୱାରା ଉତ୍କ୍ଷିପ୍ତ କରି ରାଜାଙ୍କ ଶିରଃପ୍ରଦେଶରେ ଅଭିନିକ୍ଷେପ କରିବେ ଏବଂ "ସୁରାସ୍ତ୍ୱାମଭିଷିଞ୍ଚନ୍ତୁ" ଇତ୍ୟାଦି ମନ୍ତ୍ର ପାଠ କରିବେ । ପରେ ରାଜାଙ୍କ ଲଲାଟୋପରି ପଟ୍ଟ (ରାଜଟୀକା) ଓ ମସ୍ତକରେ ମୁକୁଟ ପିନ୍ଧାଇବେ । ତତ୍ପରେ ଅଭିଷିକ୍ତ ରାଜା ଯେତେବେଳେ ଅଭିମନ୍ତ୍ରିତ ହସ୍ତୀ (ରାଜହସ୍ତୀ)ରେ ଆରୋହଣ କରିବେ, ସେତେବେଳେ ପ୍ରଧାନ ଅମାତ୍ୟ, ଦୈବଜ୍ଞ, ପୁରୋହିତମାନେ ଅନ୍ୟହସ୍ତୀରେ ଆରୋହଣୀ ହେବେ । ତତ୍ପରେ ସମସ୍ତେ ଏକତ୍ରିତ ହୋଇ ରାଜମାର୍ଗରେ ପରିଭ୍ରମଣ କରିବେ ।" ଇତ୍ୟାଦି ବିଷୟ ଧର୍ମଦାସ ସେନଙ୍କ ପ୍ରଣୀତ 'ଭାରତ ରହସ୍ୟ' ୧ମ ଭାଗରେ ଲିଖିତଅଛି ।

ଉପରଉକ୍ତ ପ୍ରମାଣମାନଙ୍କରୁ ଉପଲବ୍ଧି ହେଉଅଛି ଯେ ଭଦ୍ରବିପ୍ରମାନେ ସମସ୍ତ କର୍ମରେ ବରଣୀ ହୋଇ ପୁରୋହିତକାର୍ଯ୍ୟ କରୁଥିଲେ । ବର୍ତ୍ତମାନ ମଧ୍ୟ ଏତଦେଶର ଭଦ୍ରବିପ୍ରମାନେ ଗୋଗ୍ରହୋଷ ଶାନ୍ତି ଆଦି ଅନେକ କାର୍ଯ୍ୟରେ ପୁରୋହିତ୍ୟ ହୋଇଅଛନ୍ତି ; ପ୍ରମାଣ ସ୍ୱରୂପ ସର୍ବଦା ପୁରୋହିତରୂପେ ବରିତ ହେଲେ ଶାସ୍ତ୍ରୀୟ ମର୍ଯ୍ୟଦା ଅକ୍ଷୁଣ୍ଣ ରହିବ ।

## ଦେବତାଙ୍କୁ ପୂଜା କରିବା ଭଦ୍ରବିପ୍ରଙ୍କର ଅଧିକାର ।

ପୂର୍ବେ ଲେଖାହୋଇଅଛି ଯେ, ବ୍ରହ୍ମାଂଶ ଓ ସୂର୍ଯ୍ୟାଂଶ ଏହି ଦ୍ୱିବିଧ ବ୍ରାହ୍ମଣ । ଭଦ୍ରବିପ୍ରମାନେ ମଗ, ଯାଜକ, ଭୋଜ୍ୟ ଓ ଭୋଜକ ଏବଂ ଅନ୍ୟାନ୍ୟ ବ୍ରାହ୍ମଣମାନେ ସୌମ ନାମରେ କଥିତ । ଭୋଜକ ବ୍ରାହ୍ମଣମାନେ ସୂର୍ଯ୍ୟଦେବଙ୍କୁ ପୂଜା କରିବା

ବିଷୟ ଏପୁସ୍ତକର ପ୍ରଥମ ଅଧ୍ୟାୟରେ ଲେଖା ହୋଇଅଛି । ଏତଦ୍ଭିନ୍ନ ପ୍ରତ୍ୟେକ ଦେବତାଙ୍କ ପୂଜା କରିବାର ଅଧିକାର ଗ୍ରହବିପ୍ରଙ୍କର ଥିବାରୁ ତାହା ଏଠାରେ ଉଲ୍ଲେଖ କରାଗଲା ।

ନାଧିକାରସ୍ତୁ(୧) ବିପ୍ରାଣାଂ ଭୌମାନାଂ ଦେବପୂଜନେ ।
ତଥା ଭରତଶାର୍ଦ୍ଦୂଳ ନାଧିପତ୍ୟେ ବିଶେଷତଃ ।
(ବ୍ରହ୍ମପୁରାଣ. ଉତ୍ତରଖଣ୍ଡ ଭୌମୋକ୍ତି ।।

ଯସ୍ତୁ ପୂଜୟତେ ଦେବାଂ ବ୍ରାହ୍ମଣୋ ଦ୍ରବ୍ୟଲୋଭତଃ ।
ତଥା କୁରୁକୁଳଶ୍ରେଷ୍ଠ ସ ଯାତି ନରକଂ ଧ୍ରୁବମ୍ ।
ଦେବାଳୟେଷୁ ସର୍ବେଷୁ ଅଗ୍ନିକାର୍ଯ୍ୟେ ଚ ସୁବ୍ରତ ।
ଯଃ କୁର୍ଯ୍ୟାତ୍ ଦ୍ରବ୍ୟଲୋଭେନ ଅଧୋଗତି ମବାପ୍ନୁୟାତ୍ ।
ଦେବାଳୟେଷୁ ସର୍ବେଷୁ ବର୍ଜୟିତ୍ୱା ଶିବାଳୟମ୍ ।
ଦେବାନାଂ ପୂଜନେ ରାଜନ୍ ଅଗ୍ନିକାର୍ଯ୍ୟେଷୁ ବା ବିଭୋ ।
ଅଧିକାରଃ ସ୍ମୃତୋ ରାଜନ୍ ଭୋଜକାନାଂ ନ ସଂଶୟଃ ।
ପୂଜୟନ୍ତସ୍ତୁ ତେ ଦେବାନ୍ ପ୍ରାପ୍ନୁବନ୍ତି ପରାଂ ଗତିମ୍ ।
(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୨୧୦ ଅଃ)

ଅର୍ଥ ।— ହେ ଭରତଶ୍ରେଷ୍ଠ ! ଭୌମ ବ୍ରାହ୍ମଣମାନଙ୍କର ଦେବପୂଜାରେ ଅଧିକାର ନାହିଁ । ହେ କୁରୁକୁଳଶ୍ରେଷ୍ଠ, ଯେଉଁ ବ୍ରାହ୍ମଣ ଦ୍ରବ୍ୟ-ଲୋଭରେ ବେତନ ଗ୍ରହଣ ପୂର୍ବକ ଦେବପୂଜା କରେ, ସେ ନିଶ୍ଚୟ ନରକଗାମୀ ହୁଏ । ହେ ସୁବ୍ରତ, ସମସ୍ତ ଦେବାଳୟରେ ଓ ଅଗ୍ନି କାର୍ଯ୍ୟରେ ଯେ ବ୍ରାହ୍ମଣ ଦ୍ରବ୍ୟଲୋଭବଶରେ, ସେ ନିଶ୍ଚୟ ଅଧୋଗତି ପ୍ରାପ୍ତ ହୁଏ । ହେ ରାଜନ୍ ! ଶିବାଳୟ ଛଡ଼ା ସମସ୍ତ ଦେବାଳୟରେ, ଦେବ-ପୂଜାରେ ଏବଂ ଅଗ୍ନିକାର୍ଯ୍ୟରେ ଭୋଜକ (ଗ୍ରହବିପ୍ର)ମାନେ ଅଧିକାରୀ ; ଏଥିରେ କୌଣସି ସନ୍ଦେହ ନାହିଁ। ସେମାନେ ଦେବପୂଜାଦ୍ୱାରା ମୋକ୍ଷଗତି ପ୍ରାପ୍ତ ହୁଅନ୍ତି ।

(୧) "ନାଧିକାରୋଽସ୍ତି" ଇତି ପାଠାନ୍ତର ।

ଏତେ ମତ୍ପୂଜନେ ଯୋଗ୍ୟା ପ୍ରତିଷ୍ଠାସୁଚ ସଙ୍ଗ୍ରହାଃ ।
ଅଥବାଃ ଭୋଜକାଃ ସର୍ବେନାନ୍ୟେ ବିପ୍ରାଦୟୋ ନୃପ । ଭା୧୭॥

ଅର୍ଥ ।—ସୂର୍ଯ୍ୟ କହୁଅଛନ୍ତି, ମୋର (ସୂର୍ଯ୍ୟଙ୍କର) ପୂଜା ପ୍ରତିଷ୍ଠାଦି କାର୍ଯ୍ୟରେ ଭୋଜକ ବ୍ରାହ୍ମଣମାନେ ଅଧିକାରୀ ଅଟନ୍ତି, ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କର ଅଧିକାର ନାହିଁ ।

ଏଥିରୁ ସ୍ପଷ୍ଟରୂପେ ଜଣାପଡ଼ୁଅଛି ଯେ, ସୂର୍ଯ୍ୟ ଦେବତାଙ୍କୁ ତଥା ସମସ୍ତ ଦେବତାଙ୍କୁ ପୂଜା କରିବାର ଅଧିକାର ଭୋଜକ (ମଗବିପ୍ର)ମାନଙ୍କର ରହିଅଛି । ଯେଉଁମାନେ ପୁରୋହିତ କାର୍ଯ୍ୟ କରୁଅଛନ୍ତି, ସେମାନେ ନିଶ୍ଚୟ ଦେବତା ପୂଜା କରିପାରନ୍ତି ଏଥିରେ କିଛି ସନ୍ଦେହ ନାହିଁ । ପ୍ରମାଣ ସ୍ୱରୂପ ଏସ୍ଥାନର ମଗବିପ୍ରମାନେ ମଧ୍ୟ ଶାଳଗ୍ରାମ ଓ ଧାତୁନିର୍ମିତ ମହିଷାମର୍ଦ୍ଦିନୀ ମୂର୍ତ୍ତି ଆଦି ବୈଦିକ ଦେବତାଙ୍କର ପୂଜା ସ୍ୱହସ୍ତରେ କରୁଅଛନ୍ତି । (ଏପରିସ୍ଥଳେ ବିଶେଷ ଉଲ୍ଲେଖ କରିବା ଅନାବଶ୍ୟକ ।)

## ଏକାଦଶ ଅଧ୍ୟାୟ ।

### ମଗବିପ୍ରଙ୍କୁ ଭୋଜନ କରାଇବାର ଫଳ ।

ଯେଉଁ ମଗବିପ୍ର ବା ଶାକଦ୍ୱୀପୀ ବ୍ରାହ୍ମଣମାନେ ହିନ୍ଦୁ ସମାଜରେ ପୂଜ୍ୟ, ସେମାନଙ୍କୁ ପ୍ରତ୍ୟେକ କର୍ମରେ ଶ୍ରଦ୍ଧା ସହିତ ଭୋଜନ କରାଇବା ଶାସ୍ତ୍ରବିହିତ । ତାହା ସାଧାରଣଙ୍କ ବୋଧ-ସର୍ଥେ କେତୋଟି ପ୍ରମାଣ ନିମ୍ନରେ ପ୍ରଦତ୍ତ ହେଲା ।

ଶ୍ରଦ୍ଧୟା ଭୋଜୟେଦ୍ଧାପି ବ୍ରାହ୍ମଣାନ୍ ଭକ୍ତିତୋ ନୃପ ।
ଦିବ୍ୟାନ୍ ଭୌମାଂଶ୍ଚ ବିଧିବଦ୍ଭାସ୍କରପ୍ରୀତୟେ ପୁମାନ୍ ।
(କଳ୍ପତରୁ ହେମାଦ୍ରି ।)

ଅର୍ଥ ।—ହେ ନୃପ ! ସୂର୍ଯ୍ୟଦେବଙ୍କର ପ୍ରୀତି ସକାଶେ ଦିବ୍ୟବ୍ରାହ୍ମଣ ଓ ଭୌମବ୍ରାହ୍ମଣମାନଙ୍କୁ ଯଥାବିଧି ଭକ୍ତି ଓ ଶ୍ରଦ୍ଧାର ସହିତ ଭୋଜନ କରାଇବ ।

ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୨୫ ଅଧ୍ୟାୟ ୧୫ ଶ୍ଳୋକରେ ଯାଜ୍ଞବଲ୍କ୍ୟଙ୍କ ପ୍ରତି ବ୍ରହ୍ମବାକ୍ୟ—

ପ୍ରଥମଂ ଭୋଜକା ଭୋଜ୍ୟାଃ ପୁତ୍ର !(୧) ସ୍ୱବଦ୍ଭୂଷୈଃ ଖଗ ।
ତେଷାମଭାବେ ମନ୍ତ୍ରବିଦସ୍ତଥା ବେଦବିଦୋ ଦ୍ୱିଜାଃ ।

ଅର୍ଥ । ସର୍ବାଗ୍ରେ ନିଜର ପୁରୋହିତ ସହିତ ଭୋଜକ (ଗ୍ରହବିପ୍ର)ମାନଙ୍କୁ ଭୋଜନ କରାଇବ । ସେମାନଙ୍କ ଅଭାବରେ ମନ୍ତ୍ରବିଦ୍ ଓ ବେଦବିଦ୍ ବ୍ରାହ୍ମଣମାନଙ୍କୁ ଭୋଜନ କରାଇବ ।

ପିତୃନୁଦ୍ଦିଶ୍ୟ ଯଃ ଶ୍ରାଦ୍ଧେ ଭୋଜୟେଦ୍ଭୋଜକାନ୍ ନରଃ ।
ସ୍ୱସ୍ଥାନଂ ସମବାପ୍ନୋତି ଭବନାତ୍ ମଣ୍ଡଳସ୍ୟଃ ।
( ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୮୭ ଅଃ ୮୮ )

ଅର୍ଥ ।—ଶ୍ରାଦ୍ଧରେ, ପିତୃ ଉଦ୍ଦେଶ୍ୟରେ ଯେଉଁବ୍ୟକ୍ତି ଭୋଜକ ବ୍ରାହ୍ମଣମାନଙ୍କୁ ଭୋଜନ କରାଇବେ, ସେ ନିଶ୍ଚୟ ସୂର୍ଯ୍ୟଲୋକ ପ୍ରାପ୍ତ ହୁଅନ୍ତି ।

ଦୈବପକ୍ଷୋତ୍ସବେ ଶ୍ରାଦ୍ଧେ ପୁଣ୍ୟେଷୁ ଦିବସେଷୁ ଚ ।
ଯତ୍ନଂ ସମ୍ପୂଜ୍ୟ ବିଧିବଦ୍ଭୋଜକାନ୍ ଭୋଜୟେତ୍ତତଃ ।
ପିତରଃ ସର୍ବଦେବାନାଂ ସୂର୍ଯ୍ୟମାଶ୍ରିତ୍ୟ ସଂସ୍ଥିତାଃ ।
ପ୍ରୀତେ ସୂର୍ଯ୍ୟେ ଭବେତ ସର୍ବେ ପ୍ରୀତାଃ ସ୍ୟୁର୍ନାତ୍ର ସଂଶୟଃ ।
ତସ୍ମାଚ୍ଛ୍ରାଦ୍ଧେ ବିଶେଷେଣ ପୁଣ୍ୟେଷୁ ଦିବସେଷୁ ଚ ।

---

(୧) ଅନ୍ୟଗ୍ରନ୍ଥରେ "ପୁତ୍ର" ସ୍ଥଳେ "ପୂଗଣ" ପାଠାନ୍ତର ।

ସ୍ୱର୍ଗାଦ୍ୟାପିବାଞ୍ଛେଦ୍ ଭୋଜକଂ ଯସ୍ତୁ ଭୋଜୟେତ୍ ।
ସୋଽପି ତାଂ ଗତିମାପ୍ନୋତି ନ ତାଂ ଯଜ୍ଞ ଶତୈରପି ।
ତସ୍ମାନ୍ମାନ୍ୟାଶ୍ଚ ପୂଜ୍ୟାଶ୍ଚ ରକ୍ଷଣୀୟାଶ୍ଚ ସର୍ବଦା ।
ଭୋଜକାଃ କୁରୁଶାର୍ଦ୍ଦୂଳ ! ସୌରେଣ ଗତିମିଚ୍ଛତା ।
ଦତ୍ତ୍ୱାତୁ ଭୋଜକେ ସୌମ୍ୟଂ ହ୍ୟାସନଂ ସ ପରିଚ୍ଛଦମ୍ ।
ଧାତୁଦନ୍ତମୟଞ୍ଚାପି ରାଜା ଭବତି ଭୂତଳେ ।
ତଦ୍ସୂର୍ଯ୍ୟୋ ଭୋଜକଃ ସୋଽହଂ ଭୋଜକଃ ସୂର୍ଯ୍ୟ ଏବହି ।
ତେନ ଭୋଜକବକ୍ତ୍ରେଷୁ ଦାନମକ୍ଷୟ୍ୟ ମିତ୍ୟପି ।
(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୭୧ ଅଃ)

ଅର୍ଥ ।—ଦୈବସଙ୍କୋଚବରେ ଶ୍ରାଦ୍ଧରେ ଓ ପୁଣ୍ୟଦିନରେ ସୂର୍ଯ୍ୟଦେବଙ୍କର ଯଥାବିଧି ଅର୍ଚ୍ଚନା କରି ଭୋଜକବ୍ରାହ୍ମଣମାନଙ୍କୁ ଭୋଜନ କରାଇବ । ପିତୃ ପୁରୁଷମାନେ ସମସ୍ତ ଦେବତାଙ୍କ ମଧ୍ୟରେ ସୂର୍ଯ୍ୟଦେବଙ୍କୁ ଆଶ୍ରୟ କରି ଅବସ୍ଥାନ କରନ୍ତି । ସୂର୍ଯ୍ୟ-ଦେବ ସନ୍ତୁଷ୍ଟ ହେଲେ ସେମାନେ ସନ୍ତୁଷ୍ଟ ହୁଅନ୍ତି । ସେହି ହେତୁରୁ ଶ୍ରାଦ୍ଧରେ ଏବଂ ପୁଣ୍ୟଦିନରେ ଯେଉଁବ୍ୟକ୍ତି ଯତ୍ନପୂର୍ବକ ସର୍ବାଂଶରୁ ବା କେବଳଶରୁ ଭୋଜକ ବ୍ରାହ୍ମଣମାନଙ୍କୁ ଭୋଜନ କରାଇ ଥାଏ, ତଦ୍ଦ୍ୱାରା ଯେଉଁ ଫଳ (ବା ଗତି) ଲାଭହୁଏ, ତାହା ଶତଯଜ୍ଞରେ ସୁଦ୍ଧା ଲାଭ କରି ହୁଏନାହିଁ । ହେ କୁରୁଶ୍ରେଷ୍ଠ ! ତନ୍ନିମିତ୍ତ ସୂର୍ଯ୍ୟଲୋକାଭିଳାଷୀ ବ୍ୟକ୍ତିଙ୍କ ଦ୍ୱାରା ସର୍ବଦା ସମସ୍ତ କାର୍ଯ୍ୟରେ ଭୋଜକ ବ୍ରାହ୍ମଣମାନେ ମାନନୀୟ, ପୂଜ୍ୟ ଓ ରକ୍ଷଣୀୟ । ଭୋଜକ ବ୍ରାହ୍ମଣମାନଙ୍କୁ ଉତ୍କୃଷ୍ଟ ପରିଚ୍ଛଦ ସହିତ ଧାତୁଦନ୍ତମୟ ଆସନ ପ୍ରଦାନ କଲେ, ଭୂମଣ୍ଡଳରେ ରାଜ୍ୟାଧିପତି ହୁଅନ୍ତି । ସୂର୍ଯ୍ୟହିଁ ଭୋଜକ, ଭୋଜକହିଁ ସୂର୍ଯ୍ୟ ; ଏଥିସକାଶେ ଭୋଜକ ବକ୍ତ୍ରକୁ ଯାହା ଦିଆଯାଏ, ତାହା ଅକ୍ଷୟ ଦାନ ଅଟେ ।

ଯସ୍ୟ ଭୁଙ୍କ୍ତେ ଭୋଜକସ୍ତୁ ଗନ୍ଧପୁଷ୍ପାଦିନାର୍ଚ୍ଚିତଃ ।
ତସ୍ୟ ଗାତ୍ରୈଃ ସ୍ୱୟଂ ଭୁଙ୍କ୍ତେ ପିତରୋ ଦେବତାସ୍ତଥା ।। ଭାରତେ

ଅର୍ଥ ।—ଗନ୍ଧପୁଷ୍ପ ଦ୍ୱାରା ଅର୍ଚ୍ଚିତ କରି ଭୋଜକମାନଙ୍କୁ ଯେଉଁମାନେ ପ୍ରଦତ୍ତ ଭୋଜ୍ୟ ଭୋଜନ କରନ୍ତି, ପିତୃଦେବତାମାନେ ସ୍ୱୟଂ ତାହାଙ୍କର ପ୍ରଦତ୍ତଭୋଜ୍ୟ ଭୋଜକମାନଙ୍କ ମୁଖରୁ ଭୋଜନ କରି ଥାଆନ୍ତି ।

ତଦ୍ୱାଂଶୋ ବ୍ରାହ୍ମଣୋ ଯସ୍ୟ ଗୃହେ ଯଦି ଭୋକ୍ତୁମର୍ହେତ୍ ।
ତଦନ୍ନଂ ମେରୁତୁଲ୍ୟଂ ସ୍ୟାତ୍ ତଜ୍ଜଲଂ ସାଗରୋପମଂ । ବ୍ରହ୍ମବୈବ

ଅର୍ଥ ।—ତଦ୍ୱାଂଶ ବ୍ରାହ୍ମଣ ଯାହାଙ୍କ ଗୃହରେ ଭୋଜନ କରନ୍ତି, ତାହାଙ୍କର ଅନ୍ନ, ମେରୁ ଓ ଜଳାଶୟ ଦାନ ପ୍ରାପ୍ତ ଫଳକର କରଏ । ତଦ୍‌ବ୍ରାହ୍ମଣଙ୍କୁ ବସ୍ତ୍ର ଓ ଶ୍ରଦ୍ଧା ସହିତ ଭୋଜନ କରାଇଲେ ଲକ୍ଷେ ବ୍ରାହ୍ମଣ ଭୋଜନ କରାଇବା ପ୍ରାପ୍ତ ଫଳଲବ୍ଧ ହୁଏ ।

ଜ୍ୟୋତିଶ୍ଚାର୍ଥତତ୍ତ୍ୱେତତ୍ କୃତ୍ସ୍ନଂ ଜାନାତି ଯୋ ଦ୍ୱିଜଃ ।
ଅଗ୍ରଭୁକ୍ ସ ଭବେଚ୍ଛ୍ରାଦ୍ଧେ ପୂଜିତଃ ପଂକ୍ତିପାବନଃ । ବୃହତ୍‌ସଂହିତା

ଭାବାର୍ଥ—ଜ୍ୟୋତିଃଶାସ୍ତ୍ରଜ୍ଞ ବ୍ରାହ୍ମଣମାନେ ପଂକ୍ତିଶ୍ରେଷ୍ଠ, ସେମାନଙ୍କୁ ଶ୍ରାଦ୍ଧରେ ଅଗ୍ରେ ଭୋଜନ କରାଇବା କର୍ତ୍ତବ୍ୟ ।

ଏହିସମସ୍ତ ପ୍ରମାଣମାନଙ୍କରୁ ଜଣାଯାଉଅଛି ଯେ, ପ୍ରତ୍ୟେକ କାର୍ଯ୍ୟରେ ଶ୍ରାଦ୍ଧବଟୁମାନଙ୍କୁ ଭୋଜନ କରାଇବା କର୍ତ୍ତବ୍ୟ । ଏ ଦେଶରେ ମଧ୍ୟ ପ୍ରତ୍ୟେକ କାର୍ଯ୍ୟରେ ଶ୍ରାଦ୍ଧବଟୁମାନେ ଯଜମାନ ଦ୍ୱାରରେ ଭୋଜନ କରିଥାନ୍ତି (ଆଷ ଦ୍ରଷ୍ଟବ୍ୟ) । ଏହାର ଅନ୍ୟଥା କଲେ ସମସ୍ତ କିଛି ନିଷ୍ଫଳ ହୁଏ । ଶ୍ରାଦ୍ଧବଟୁମାନଙ୍କୁ ଭୋଜନ କରାଇଲେ ପିତୃ ଦେବତାମାନେ ନିଜେ ଭୋଜନ କଲା ପରି ତୃପ୍ତିଲାଭ କରନ୍ତି । ଏପରି ଶ୍ରାଦ୍ଧବଟୁଙ୍କ ଆଳସ୍ୟରେ ବର୍ଣ୍ଣି-

ଚତୁଷ୍ଟ୍ୟ ଭୋଜନ କରିବା ପ୍ରଶସ୍ତ ; ଯାହାର ପ୍ରମାଣ, ବ୍ୟବସ୍ଥା ପତ୍ରାଦି ଭାରତର ବର୍ଦ୍ଧମାନଗଣ୍ୟ କାଶୀଧାମର ଓ ବଙ୍ଗର ପଣ୍ଡିତ ମଣ୍ଡଳଙ୍କ ଦ୍ୱାରା ପ୍ରକାଶିତ "ଦୁର୍ଜ୍ଜନଯ୍ୟ ଚପେଟିକା' ଓ 'ଅଗ୍ରଦୂର୍ଯ୍ୟ ଦର୍ପଣ" ଆଦି ପୁସ୍ତକରେ ପ୍ରଦତ୍ତ ହୋଇଅଛି । ଏ ପୁସ୍ତକର ସ୍ଥାନାନ୍ତରରେ କେବଳ ଦେଶୀୟ ମତାମତ ପ୍ରଦତ୍ତ ହୋଇଅଛି ।

# ଦ୍ୱାଦଶ ଅଧ୍ୟାୟ ।

## ନକ୍ଷତ୍ରସୂଚୀ-ଗଣକ ଓ ଜାତକାଶ୍ରୟ ବ୍ରାହ୍ମଣ ।

ଜ୍ୟୋତିଃଶାସ୍ତ୍ରାଧ୍ୟୟନ କାର୍ଯ୍ୟ ଗ୍ରହବିପ୍ରଙ୍କ ବ୍ୟତୀତ ଅନ୍ୟାନ୍ୟ ବିପ୍ରଙ୍କ ପକ୍ଷରେ ନିନ୍ଦନୀୟ, ପୂର୍ବେ ଏ ବିଷୟର ଉଲ୍ଲେଖ ହୋଇଅଛି । ବ୍ରାହ୍ମଣ ଜ୍ୟୋତିଷଶାସ୍ତ୍ର ଆଲୋଚନା କରିବା ଦ୍ୱାରା ନକ୍ଷତ୍ରସୂଚୀ ଗଣକ ସଂଜ୍ଞା ପ୍ରାପ୍ତ ହୋଇଅଛନ୍ତି ଯଥା ;—

ବିପ୍ରସ୍ତୁ ଜ୍ୟୋତିର୍ଗଣନାଦ୍ ବେତନାର୍ଥ ନିରନ୍ତରଂ ।
ବେଦାଭ୍ୟାସଂ ପରିତ୍ୟଜ୍ୟ ବଭୂବ ଗଣକୋଦ୍ଭବ । ବ୍ରହ୍ମବୈବର୍ତ୍ତ ପୁରାଣ

ଅର୍ଥ ।—ବ୍ରାହ୍ମଣ ବେଦାଭ୍ୟାସ ପରିତ୍ୟାଗ କରି, ନିରନ୍ତର ବେତନ ଗ୍ରହଣ ଓ ଜ୍ୟୋତିଷଶାସ୍ତ୍ର ଆଲୋଚନା କରିବା ଦ୍ୱାରା ଗଣକ ନାମରେ ପରିଚିତ ହୁଅନ୍ତି । (କାରଣ ଜ୍ୟୋତିଃଶାସ୍ତ୍ରାଧ୍ୟୟନ ବ୍ରାହ୍ମଣଙ୍କର କାର୍ଯ୍ୟ ନୁହେଁ ।)

ବ୍ରାହ୍ମଣ ଜ୍ୟୋତିଷଶାସ୍ତ୍ର ଶିକ୍ଷାକଲେ ଯେପରି ନିନ୍ଦନୀୟ, ତଦ୍ରୂପ ଗ୍ରହବିପ୍ର ଜ୍ୟୋତିଷଶାସ୍ତ୍ର ଅଧ୍ୟୟନ ନ କଲେ ନିନ୍ଦନୀୟ ଏବଂ ଜାତସଂଜ୍ଞା ଲାଭ କରନ୍ତି ଯଥା ;—

ଅବ୍ରତୈର୍ବ୍ବିଦ ଯଃ ଶାସ୍ତ୍ରଂ ଦୈବଜ୍ଞତ୍ୱଂ ପ୍ରପଦ୍ୟତେ ।
ସପଂକ୍ତିଦୂଷକୋ ପାପୋ ଜ୍ଞେୟୋ ନକ୍ଷତ୍ରସୂଚକଃ । ବସିଷ୍ଠସଂହିତା

ଅର୍ଥ ।—ଯେଉଁମାନେ ଶାସ୍ତ୍ର ବୋଲି କିଅଣ ଜାଣନ୍ତି ନାହିଁ ଅଥଚ ଦୈବଜ୍ଞ ବୋଲି ପରିଚୟ ଦିଅନ୍ତି ; ସେମାନେ ପଂକ୍ତିଭୁକ୍ତ ନୁହନ୍ତି । ସେହି ପାପାତ୍ମା ଗଣକଙ୍କୁ ନକ୍ଷତ୍ରସୂଚୀ କହନ୍ତି ।

ଶ୍ରୁତିବିପ୍ର କୁଳରେ ଜନ୍ମ ହୋଇ ବେଦଗଣନା ଓ ବେଦୋପଜୀବୀ ଅର୍ଥ ନ ଜାଣିଲେ ଯେପରି ନକ୍ଷତ୍ରସୂଚୀ ବା ଜାତପଙ୍କ୍ତି ପ୍ରାପ୍ତ ହୁଅନ୍ତି ; ସେହିପରି ବିପ୍ର (ବ୍ରାହ୍ମଣ) କୁଳରେ ଜନ୍ମଗ୍ରହଣ କରି ବେଦାଧ୍ୟୟନ, ଗାୟତ୍ରୀ ଅଦି ଜପ ଛାଡ଼ି ଚାକିରୀ ପ୍ରଭୃତି ବୃତ୍ତି ଅବଲମ୍ବନ କଲେ ସେମାନେ ବୃଷଳ ଅଦି ଜାତକାଦିରୂପେ ଗଣ୍ୟ ହୋଇ ଦ୍ୱିଜମାନଙ୍କରେ ପତିତ ହୁଅନ୍ତି । ମନୁସଂହିତା ୨ୟ ଅଧ୍ୟାୟରେ ଲେଖାଅଛି ;—

ଯୋଽନଧୀତ୍ୟ ଦ୍ୱିଜୋ ବେଦମନ୍ୟତ୍ର କୁରୁତେ ଶ୍ରମଂ ।
ସ ଜୀବନ୍ନେବ ଶୂଦ୍ରତ୍ୱମାଶୁ ଗଚ୍ଛତି ସାନ୍ୱୟଃ । ୧୬୮ ।

ଅର୍ଥ ।—ଯେଉଁ ଦ୍ୱିଜ ବେଦ ଅଧ୍ୟୟନ ନକରି ଅନ୍ୟତ୍ର ପରିଶ୍ରମ କରେ, ସେ ଜୀବିତାବସ୍ଥାରେ ନିଜର କୁଳସହ ଶୂଦ୍ରତ୍ୱକୁ ପ୍ରାପ୍ତ ହୁଏ । ଏମନ୍ତ ପରାଶରସଂହିତା ୧୨ଶ ଅଧ୍ୟାୟରେ ଲେଖାଅଛି—

ଅଗ୍ନିକାର୍ଯ୍ୟାତ୍ ପରିଭ୍ରଷ୍ଟାଃ ସନ୍ଧ୍ୟୋପାସନବର୍ଜ୍ଜିତାଃ ।
ବେଦଞ୍ଚୈବାନଧୀୟାନାଃ ସର୍ବ୍ବେ ତେ ବୃଷଳାଃ ସ୍ମୃତାଃ । ୨୯

ଅର୍ଥ ।— ଯେଉଁ ବ୍ରାହ୍ମଣମାନେ ଅଗ୍ନିକାର୍ଯ୍ୟ (ହବନକର୍ମ)ରୁ ଭ୍ରଷ୍ଟ ହୋଇଥାନ୍ତି, ସନ୍ଧ୍ୟା ଓ ଉପାସନା ବର୍ଜ୍ଜିତ ହୋଇଥାନ୍ତି ଏବଂ ବେଦ ଅଧ୍ୟୟନ କରନ୍ତି ନାହିଁ ; ଏହିପରି ବ୍ରାହ୍ମଣଙ୍କୁ "ବୃଷଳ" ବୋଲାଯାଏ । ମନୁ ୮ମ ଅଧ୍ୟାୟରେ ଲେଖାଅଛି ;—

ଗୋରକ୍ଷକାନ୍ ବାଣିଜକାଂ ସ୍ତଥା କାରୁକୁଶୀଲବାନ୍ ।
ପ୍ରୈଷ୍ୟାନ୍ ବାର୍ଦ୍ଧୁଷିକାଂଶ୍ଚୈବ ବିପ୍ରାନ୍ ଶୂଦ୍ରବଦାଚରେତ୍ ।
ଅସ୍ୱଳକା ମସୀଜୀବୀ ଦେବଳା ଗ୍ରାମଯାଜକାଃ ।
ଧାବକା ପାଚକାଶ୍ଚୈବ ଷଡ଼େତେ ପତିତା ଦ୍ୱିଜାଃ । ଇତ୍ୟାଦି

ଶୂଦ୍ରଗଣକ—(ଗଣପତି-ଗଣକ ଅର୍ଥାତ୍ ଯେଉଁ ଶୂଦ୍ର ଗଣନାକାର୍ଯ୍ୟ କରୁଥାଏ ତାହାକୁ ଶୂଦ୍ରଗଣକ ବୋଲନ୍ତି । ପୂର୍ବରେ କୌଣସି ଶୂଦ୍ର ଗଣନା କାର୍ଯ୍ୟ କରୁଥିଲେ, ସେହିଠାରୁ ଶୂଦ୍ରଗଣକ ବା ନକ୍ଷତ୍ରସୂଚୀ ଶବ୍ଦ ନାମରେ ଗୋଟିଏ ବର୍ଣ୍ଣସଙ୍କର ଜାତି ହେବାର କୌଣସି ଗ୍ରନ୍ଥରେ ପ୍ରମାଣ ଅଛି । ସେମାନଙ୍କର ଯଜନ ଯାଜନାଦି ବ୍ରାହ୍ମଣୋଚିତ କର୍ମ ନାହିଁ । ଏପରି କି କାନ୍ଧରେ ପଇତା ପର୍ଯ୍ୟନ୍ତ ଥାଏ ନାହିଁ । ଶୂଦ୍ରଗଣକ ଯେ ଛତ୍ରବସ୍ତ୍ରଠାରୁ ପୃଥକ ତାହା "ପରାଶର ସଂହିତା"ରେ ଉଲ୍ଲେଖ ଅଛି—

ଛତ୍ରବସ୍ତ୍ରମୁଖାଦ୍ଗ୍ରାହ୍ୟା ଶୃଣୁୟାତ୍ ଜନପଞ୍ଜିକାମ୍ ।
ହସ୍ତେ କୃତ୍ୱା ଫଳଂ ପୁଷ୍ପଂ ନ ଶୂଦ୍ରଗଣକାଗ୍ରତଃ ।
ଶୁକ୍ଳେ ଦକ୍ଷିଣତୋ କୃଷ୍ଣେ ବାମହସ୍ତବିପର୍ଯ୍ୟୟେ ।
ଜନପଞ୍ଜୀପଦାପାଠ୍ୟା ଦୈବଜ୍ଞେନ ତୁ ଧୀମତା ॥
ଗଙ୍ଗାଦର୍ଶେ ସ୍ନାନାଦ୍ ଯତ୍ ଫଳଂ ଲଭତେ ନରଃ ।
ତତ୍ ଫଳଂ ଲଭତେ ନୂନଂ ପଞ୍ଜିକାଶ୍ରବଣେନ ଚ ।

ରାଜା ହସ୍ତରେ ଫଳ ପୁଷ୍ପ ନେଇ ଛତ୍ରବସ୍ତ୍ରଙ୍କ ମୁଖରୁ ନୂତନ ପଞ୍ଜିକାର ଫଳାଫଳ ଶ୍ରବଣ କରିବେ । ଶୂଦ୍ରଗଣକ ମୁଖରୁ ଶୁଣିବେ ନାହିଁ । ଇତ୍ୟାଦି ।

ଏହାଦ୍ୱାରା ଦୁଇପ୍ରକାର ଗଣକ ଥିବାର ସ୍ପଷ୍ଟରୂପେ ଜଣାଯାଉଅଛି । ଏକପ୍ରକାର ଜ୍ୟୋତିଃଶାସ୍ତ୍ରାଧ୍ୟାୟୀ ଛତ୍ରବସ୍ତ୍ର, ଅନ୍ୟ-ପ୍ରକାର ଶୂଦ୍ରଗଣକ । ଗଣକର ଯେ କୌଣସି ଜନାପବାଦ ଶୁଣାଯାଏ, ତାହା ଏହି ନକ୍ଷତ୍ରସୂଚୀ ବା ଶୂଦ୍ରଗଣକ ପ୍ରତି ପ୍ରଯୋଜ୍ୟ, ଛତ୍ରବସ୍ତ୍ର ପ୍ରତି ନୁହେଁ ।

### ଗୋଟିଏ ନାମରେ ବହୁ ଜାତି ।

ପ୍ରତ୍ୟେକ ଜାତିରେ ଉଚ୍ଚ ଓ ନୀଚ ଅବସ୍ଥା ରହିଅଛି । ଉଚ୍ଚ ନୀଚର ବ୍ୟବହାର ପୃଥକ୍, ସମାନ ନୁହେଁ । ଯେପରି ଘାଟିଆ ପ୍ରଭୃତି ପତିତ ବ୍ରାହ୍ମଣମାନେ କୌଣସିମତେ ଉଚ୍ଚଜାତିର ବ୍ରାହ୍ମଣ ହୋଇ ପାରନ୍ତି ନାହିଁ । ସେହିପରି ନକ୍ଷତ୍ରସୂଚୀ (ଶୂଦ୍ର-

ଚଣ୍ଡାଳ) କୌଣସିମତେ ଉଚ୍ଚବର୍ଣ୍ଣ ଗଣନ ହୋଇ ପାରନ୍ତିନାହିଁ । ଶାସ୍ତ୍ରରେ ଗୋଟିଏ ନାମସଂଜ୍ଞାରେ ଅନେକ ପ୍ରକାର ଜାତି ଥିବାର ପ୍ରମାଣ ମିଳେ ଏବଂ ସେମାନଙ୍କ ଉତ୍ପତ୍ତି ଭିନ୍ନପ୍ରକାର, ଯଥା ;—

ହିନ୍ଦୁ ସମାଜରେ ବୈଦ୍ୟ ଉତ୍କୃଷ୍ଟ ଜାତି, ଅଥଚ ବୈଦ୍ୟ ନାମରେ ଅନ୍ୟ ନୀଚଜାତି ମଧ୍ୟ ଅଛି । ମାଳବୈଦ୍ୟ (ବେଳା), ଶୁକ୍ଳବୈଦ୍ୟ (ଧୋବା), ନଡ଼ବୈଦ୍ୟ (ବାଉରି) ଇତ୍ୟାଦି । ଏମାନେ ବୈଦ୍ୟ ନାମଧାରୀ ହେଲେହେଁ ଜାତି କର୍ମ ଭିନ୍ନପ୍ରକାର । ତନ୍ତି ନାମରେ ଅନେକ ଜାତି ଅଛନ୍ତି, ଯଥା ;—ଅପଲତନ୍ତି, ମୃଗୀତନ୍ତି, ଧୋପାତନ୍ତି, ମାଷ୍ଟଅତନ୍ତି ଇତ୍ୟାଦି । ତନ୍ତି ବୋଲି କହିଲେ ଯେ, ଜଳତନ୍ତି, ଧୋପତନ୍ତି, ମାଷ୍ଟଅତନ୍ତି ପ୍ରଭୃତି ନୀଚତନ୍ତିଙ୍କୁ କୌଣସିମତେ ଅପଲ (ବା ଅଶ୍ରେଣୀ) ତନ୍ତି ବୋଲି ବୁଝାଇ ପାରେନାହିଁ । ମାଳୀ ଦୁଇପ୍ରକାର, ଫୁଲମାଳୀ ଓ ଭୂଇଁମାଳୀ (ହାଡ଼ି) । ଫୁଲମାଳୀ ଜାତି ବିଶୁଦ୍ଧ, ଭୂଇଁମାଳୀ (ହାଡ଼ି) ଜାତି ନିତାନ୍ତ ନିକୃଷ୍ଟ । କୈବର୍ତ୍ତ ନାମରେ ଦୁଇପ୍ରକାର ଜାତି ଅଛି, ମାହିଷ୍ୟ ଓ ଜାଲିକ ; ଏହାମଧ୍ୟରେ ମାହିଷ୍ୟ କୈବର୍ତ୍ତ ଉତ୍କୃଷ୍ଟ, ଜାଲିକ ସେପରି ବିଶୁଦ୍ଧ ନୁହେଁ । ବଣିକ୍ ନାମରେ ତିନପ୍ରକାର ଜାତି ଅଛି—ଗନ୍ଧବଣିକ୍, ଶଙ୍ଖବଣିକ୍ ଓ ସୁବର୍ଣ୍ଣବଣିକ୍ । ଏହା ମଧ୍ୟରେ ଗୋଟିଏ ଶ୍ରେଷ୍ଠ । କାୟସ୍ଥ ଦୁଇ-ପ୍ରକାର, କାୟସ୍ଥ ଓ ମାଟିଆ-କାୟସ୍ଥ ; ଏହା ମଧ୍ୟରେ ମାଟିଆ-କାୟସ୍ଥ ନିତାନ୍ତ ନିକୃଷ୍ଟ । ଇତ୍ୟାଦି । ସେହିପରି ଉଚ୍ଚବର୍ଣ୍ଣ ଚଣ୍ଡାଳ ଓ ନୀଚଶୂଦ୍ରଗୀ (ବା ଶୂଦ୍ର) ଚଣ୍ଡାଳ ଏକ ବୋଲି ଭାବ ନୁହନ୍ତି । ସୁତରାଂ ପ୍ରତ୍ୟେକ ଜାତିରେ ଉଚ୍ଚ, ନୀଚ ଭେଦ ଅଛି । ଏହିପରି ସ୍ଥଳରେ ଲୋକେ ଦୁର୍ଭେଦ୍ୟଭ୍ରମରେ ହିନ୍ଦୁ ସମାଜରେ ମହା-ଅନର୍ଥ ଉତ୍ପାଦନ କରିଥାନ୍ତି । ଏହା ନିନ୍ଦିତ କାର୍ଯ୍ୟ ଅଟେ ।

# ତ୍ରୟୋଦଶ ଅଧ୍ୟାୟ ।

## ଉତ୍କଳରେ କୋଣାର୍କ ସମ୍ପ୍ରଦାୟ ଛଦବଗ୍ରଙ୍କର ବାସସ୍ଥାନ ।

ଏ ପୁସ୍ତକର ଚତୁର୍ଥ ଅଧ୍ୟାୟରେ ଉଲ୍ଲେଖ ହୋଇଅଛି ଯେ, "କୋଣାର୍କ" ସମ୍ପ୍ରଦାୟ ଶାକଦ୍ୱୀପୀ ବ୍ରାହ୍ମଣମାନେ ଓଡ଼ିଶାରେ ବାସସ୍ଥାପନ କରି ରହିଥିଲେ, ସେମାନଙ୍କର ସଂକ୍ଷିପ୍ତ ପରିଚୟ ଏଠାରେ ପ୍ରଦତ୍ତ ହେଲା ।

କୋଣାର୍କା ଯତ୍ରଗାସ୍ତେ ସ୍ୱବମଳମନନାଃ ସନ୍ତି ଯେଽନ୍ୟାଃ ସମୁଦ୍ରଂ
କୋଣାର୍କଂ ପୂଜୟନ୍ତୋ ମୁନିସୁରନିକରୈରଙ୍କ୍ୟାରୁଷ୍ୟାର୍ଘ୍ୟମାଣାଃ
ସନ୍ମାର୍ଗୋତ୍ପନ୍ନନିଷ୍ଠାଃ ସ୍ୱସ୍ତ୍ରହୃଦ ସତତଂ ଟନ୍ୟମାନାସ୍ତ ଝଣାଂ
ବିଖ୍ୟାତାସ୍ତେ ଧରଣ୍ୟାଂ ଚନ୍ଦ୍ରବିମଳଯଶଶ୍ଚନ୍ଦ୍ରଚୂଡ଼ାର୍ଦ୍ଧନିଷ୍ଠାଃ । ୮ ।

( 'ମଗବଂଶ' ଚନ୍ଦ୍ର ଚତୁର୍ଥୋଲ୍ଲାସ । )

ଅର୍ଥ ।— କୋଣାର୍କ ମଗବ୍ରାହ୍ମଣଙ୍କ ମଧ୍ୟରେ ସମସ୍ତେ ଶ୍ରେଷ୍ଠତ୍ୱ ଲାଭ କରିଥିଲେ । ଏମାନେ ସମୁଦ୍ରୋପକଣ୍ଠେ ବାସ ସ୍ଥାପନ କରିଥିଲେ, ଏମାନଙ୍କର ଅନ୍ତଃକରଣ ଅତ୍ୟନ୍ତ ନିର୍ମଳ ଥିଲା । ଦେବଗଣ ଓ ଋଷିଗଣ କୋଣାର୍କର ପୂଜା କରୁଥିଲେ । କୋଣାର୍କ ସମ୍ପ୍ରଦାୟ (ମଗ)ମାନେ ଉତ୍ତମନିଷ୍ଠ ଓ ସନ୍ମାର୍ଗର ଅନୁବର୍ତ୍ତୀ ଥିଲେ । ଏମାନେ ଭଗବାନ ଚନ୍ଦ୍ରଶେଖରଙ୍କର ଅଧିକାରରେ ନିବସୁଥିଲେ ଏବଂ ଯଶ ପ୍ରଭାରେ ପୃଥିବୀର ନିବସ୍ଥାନ ଅଲୋକିତ ହୋଇଥିଲା ।

"ସାମ୍ବପୁରାଣରେ କୋଣାର୍କ ମାହାତ୍ମ୍ୟ ପ୍ରସଙ୍ଗରେ ଶାକ-ଦ୍ୱୀପୀ ବ୍ରାହ୍ମଣଙ୍କ ଆଗମନ କଥା ସବିସ୍ତର ବର୍ଣ୍ଣିତ ହୋଇଅଛି । ଖ୍ରୀଷ୍ଟୀୟ ଏକାଦଶଶତାବ୍ଦୀ ପ୍ରାରମ୍ଭରେ ଅବୁରିହାନ ସାମ୍ବପୁରାଣର ଉଲ୍ଲେଖ କରିଅଛନ୍ତି । ଏହି ସାମ୍ବପୁରାଣ ପ୍ରାଚୀନଶାସ୍ତ୍ର, ଯହିଁରେ କୋଣାର୍କ ନାମକ ସୂର୍ଯ୍ୟମୂର୍ତ୍ତି ମାହାତ୍ମ୍ୟ ବର୍ଣ୍ଣିତଥିବାସ୍ଥଳେ

ଅନୁମିତ ହୁଏ ଏକାଦଶଶତାବ୍ଦୀ ପୂର୍ବରୁ ଉତ୍କଳରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ପଦାର୍ପଣ କରିଥିଲେ ଏଥିରେ ସନ୍ଦେହ ନାହିଁ। ଦୁଃଖର ବିଷୟ ବର୍ତ୍ତମାନ ପ୍ରାଚୀନ କୀର୍ତ୍ତି ବିଲୁପ୍ତ ହୋଇଅଛି।

ବର୍ତ୍ତମାନ ଐତିହାସିକ କୋଣାର୍କ ମନ୍ଦିର ଭଗ୍ନାବସ୍ଥାରେ ରହିଅଛି, ମନ୍ଦିରର ମୁଖଶାଳାରେ ଖଣ୍ଡିଏ ସୁବୃହତ୍ ପ୍ରସ୍ତରରେ ଅତି ଅଦ୍ଭୁତ ନୈପୁଣ୍ୟ ସହକାରେ ଖୋଦିତ ନବଗ୍ରହ ମୂର୍ତ୍ତି ରହିଛି। ଏଣୁ ନବଗ୍ରହ ମନ୍ଦିର ବୋଲି ଓଡ଼ିଶା ତଥା ଭାରତରେ ବିଖ୍ୟାତ। ଏହା ପୁରୀଠାରୁ ୧୦ କ୍ରୋଶ ଦୂରରେ ସମୁଦ୍ରତଟର ଅଦୂରରେ ରହିଛି। ଏହା କି ସାମ୍ବପୁରାଣୋକ୍ତ କୋଣାର୍କ ସୂର୍ଯ୍ୟମନ୍ଦିର ?

ବର୍ତ୍ତମାନ ମେଦିନୀପୁର ଓଡ଼ିଶାରେ କେଉଁ ସନ୍ଧ ସମୟରେ ଛତ୍ରଦେବମାନେ ବିସ୍ତାର ଲାଭ କରିଥିଲେ। ପୂର୍ବକାଳରେ ଇନ୍ଦ୍ରଦ୍ୟୁମ୍ନ ନାମକ ରାଜାଙ୍କର ସମସ୍ତ ଉତ୍କଳ ପ୍ରଦେଶ ଶାସନାଧୀନରେ ଥିଲା ଏବଂ ତାଙ୍କର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା। (ଉତ୍କଳଖଣ୍ଡ ୭ମ ଅଧ୍ୟାୟ ଦ୍ରଷ୍ଟବ୍ୟ।) ଶ୍ରୀକ୍ଷେତ୍ରରେ ବାସ କରିବା ନିମିତ୍ତ ସେହିସମୟରେ ଇନ୍ଦ୍ରଦ୍ୟୁମ୍ନଙ୍କ ଅତ୍ୟନ୍ତ ସମ୍ଭାବ୍ୟ ସହିତ ବ୍ରାହ୍ମଣମାନଙ୍କୁ କହିଥିଲେ—

ଜ୍ୟୋତିର୍ବିଦୋ ନୃତ୍ୟବିଦୋ ଦଣ୍ଡନୀତୌ ପ୍ରବୀଣକାଃ।
ନୃତ୍ୟାଚାର୍ଯ୍ୟନବାଦ୍ୟଜ୍ଞ ଚତୁର୍ବିଧ ସ୍ୱରଜ୍ଞକାଃ। ୧୬।

(ଉତ୍କଳଖଣ୍ଡ ଷୋଡଶ ଅଧ୍ୟାୟ।)

ଅର୍ଥ।—ଜ୍ୟୋତିର୍ବିଦ୍ ପଣ୍ଡିତମାନେ, ନୃତ୍ୟଜ୍ଞ ଭଟ୍ଟମାନେ, ଦଣ୍ଡନୀତିରେ ପ୍ରବୀଣ ବର୍ଣ୍ଣଗୁରୁମାନେ ଓ ନୃତ୍ୟ-ଗୀତ-ବାଦ୍ୟରେ ଅଭିଜ୍ଞ ବ୍ରାହ୍ମଣମାନେ ଶ୍ରୀକ୍ଷେତ୍ରରୁ ଭ୍ରମଣ କରି ମୈତ୍ର ସ୍ଥାନରେ ବାସସ୍ଥାନ କରି ରହିଲେ। (ଭବିଷ୍ୟତ ଉପଦେଶ ପାଇବା ମାତ୍ରକେ ସମସ୍ତେ ଆସି ଶ୍ରୀକ୍ଷେତ୍ରରେ ବାସସ୍ଥାନ କରି ରହିଲେ।)

ସେହି ସମୟରୁ ଶ୍ରୀକ୍ଷେତ୍ରରେ ତଥା ଓଡ଼ିଶାର ନାନା ଅଂଶରେ ଗ୍ରହବିପ୍ରମାନେ ବିସ୍ତାର ଲାଭ କରିଥିଲେ । ଏପରି ରାଜା ଅବନ୍ତୀନଗରରୁ ଉଠିଆସି ଶ୍ରୀକ୍ଷେତ୍ରଧାମରେ ରହିଥିଲେ ।

ଏହି ସମୟରେ ରାଜାଙ୍କର 'ଅସୁସ୍ଥତା ହେବାରୁ ଲେଖାଅଛି;—

ନବଗ୍ରହ ମଖାନ୍ତେତୁ ଗ୍ରହବିପ୍ରେଣ ସେଚନଃ ।
ଗ୍ରହାଣାଂ ଦୌଃସ୍ଥ୍ୟନାଶାୟ ସୌସ୍ଥ୍ୟସ୍ୟାପି ବିବୃଦ୍ଧୟେ ।
ଜ୍ୟୋତିଃଶାସ୍ତ୍ରୋଦିତୈର୍ମନ୍ତ୍ରୈ ଦୈବଜ୍ଞ ବିଧିଚୋଦିତୈଃ ।
ତତୋ ମାଙ୍ଗଲ୍ୟକେ ପଥ୍ୟବିଧାନମୁପଚକ୍ରମେ । (ଉତ୍କଳଖଣ୍ଡ)

ଅର୍ଥ ।—ନୃପତି ଗ୍ରହମାନଙ୍କର ଦୌଃସ୍ଥ୍ୟନାଶ ନିମନ୍ତେ ସୁସ୍ଥତା ଅଭିବୃଦ୍ଧି ସକାଶେ ନବଗ୍ରହଯାଗ (ଗ୍ରହଶାନ୍ତି) କରିବା ପରେ ଗ୍ରହବିପ୍ରସ୍ଥିତ ଜଳଦ୍ୱାରା ଅଭିଷିକ୍ତ ହେଲେ । ଦୈବଜ୍ଞମାନେ ବିଧିମତେ ଜ୍ୟୋତିଃଶାସ୍ତ୍ରୋକ୍ତ ମନ୍ତ୍ରଦ୍ୱାରା ମଙ୍ଗଳକୃତ୍ୟ ସମାଧା କରିଥିଲେ ।

ଏଥିରୁ ଜଣାଯାଉଅଛି ଯେ, ପ୍ରାଚୀନକାଳରୁ ଓଡ଼ିଶାରେ ଗ୍ରହବିପ୍ରମାନଙ୍କର ବାସସ୍ଥାନ ଥିଲା. ଓଡ଼ିଶାସ୍ଥ ଗ୍ରହବିପ୍ରମାନେ ଗ୍ରହଯାଗ କରୁଥିଲେ ଏବଂ ପୁରୋହିତରୂପେ ବରଣ ହେଉଥିଲେ । ଏ ଦେଶର ଦୈବଜ୍ଞମାନେ ମଧ୍ୟ ଅନେକ କର୍ମରେ ପୁରୋହିତ କାର୍ଯ୍ୟ କରୁଅଛନ୍ତି ।

ବର୍ତ୍ତମାନ ସମସ୍ତ ଉତ୍କଳ ପ୍ରଦେଶରେ ଯେ କେତେ ଗ୍ରହବିପ୍ର ଅଛନ୍ତି, ସେମାନଙ୍କ ନାମଧାମ ସଂଗ୍ରହ କରିବା ସପୃବେନାସ୍ତି କଠିନ ଏବଂ ବହୁସମୟ ସାପେକ୍ଷ । କବି କାଳିଦାସଙ୍କମତେ ମେଦିନୀପୁର ଓଡ଼ିଶା ଅନ୍ତର୍ଗତ ଉତ୍କଳଦେଶ ବୋଲି ପରିଚିତ । ବର୍ତ୍ତମାନ ମେଦିନୀପୁର ଗ୍ରହବିପ୍ରମାନେ ଧନୀ, ମାନୀ, ବୁଦ୍ଧିଯୋଗୀ ଏବଂ ଜ୍ୟୋତିଷଶାସ୍ତ୍ରରେ ବିଚକ୍ଷଣ ପଣ୍ଡିତ ଅଟନ୍ତି । ଓଡ଼ିଶାରୁ

ଅନେକ ଗ୍ରହବିପ୍ରମାନେ ଯାଇଁ ବଙ୍ଗରେ ବାସ କରିଅଛନ୍ତି ଏବଂ ବଙ୍ଗରୁ ଆସି ଓଡ଼ିଶା ମଧ୍ୟରେ ରହିଅଛନ୍ତି ।

ଓଡ଼ିଶା ଜ୍ୟୋତିଷ ମଥୁର ଶର୍ମାଙ୍କ ବାସସ୍ଥାନ ସତ୍ୟବାଦୀରେ ଥିଲା । ତାଙ୍କର ଗୋଟିଏ ପୁତ୍ର ଜନ୍ମିଥିଲେ, ୧ମ ହରିରାମ, ୨ୟ ରଘୁନାଥ, ୩ୟ ଜନାର୍ଦ୍ଦନ ଓ ୪ର୍ଥ ପରଶୁରାମ । ହରିରାମ ଓ ରଘୁନାଥ ସାଂଅଙ୍କଶିବ ଥିଲେ, ଜନାର୍ଦ୍ଦନ ଓଡ଼ିଶାରୁ ପଳାଇ ପାନବଡ଼ା ଗୁମଗଡ଼ ମେଦିନୀପୁର ଜିଲାରେ ବାସସ୍ଥାପନ କରି ମହିଷାଦଳ ରାଜାଙ୍କର ଜ୍ୟୋତିଷ ପଣ୍ଡିତ ହୋଇଥିଲେ । ମହିଷାଦଳ ରାଜା ଜନାର୍ଦ୍ଦନଙ୍କର ଜ୍ୟୋତିଷ ଗଣନାରେ ସନ୍ତୁଷ୍ଟ ହୋଇ ତମ୍ଲୁକରେ ଲେଖି ଅନେକ ଭୂସମ୍ପତ୍ତି ପ୍ରଦାନ କରିଥିଲେ । ଏ ବ୍ୟକ୍ତି ମେଦିନୀପୁର ଜିଲା ଭିତରେ ସମସ୍ତ ଅଗ୍ରଣୀବ୍ୟକ୍ତି ଏବଂ ପ୍ରଥମ ବିଜ୍ଞବର ବୋଲି ପରିଚିତ । ବର୍ତ୍ତମାନ ଜନାର୍ଦ୍ଦନଙ୍କ ପୁତ୍ରମାନେ ଉକ୍ତ ବାସ୍ତୁଭୂମିରେ ରହି ନଷ୍ଟବୃତ୍ତ ହୋଇଅଛନ୍ତି । ଏହିପରି ଓଡ଼ିଶାର ଅନେକ ଜ୍ୟୋତିଷ ଯାଇ ବଙ୍ଗରେ ଖ୍ୟାତ ଜ୍ୟୋତିଷ ହୋଇଅଛନ୍ତି ।

ମହାମାନ୍ୟ ପଣ୍ଡିତ ଶତାନନ୍ଦ ଆଚାର୍ଯ୍ୟ ଓଡ଼ିଶାର ଗ୍ରହବିପ୍ର କୁଳରେ ଜନ୍ମଗ୍ରହଣ କରିଥିଲେ । ଏ ବ୍ୟକ୍ତି ୧୦୨୧ ଶକରେ (ଗଙ୍ଗବଂଶ କୁଳୋଦ୍ଭବ) ବରାହମିହିରଙ୍କ କୃତ 'ପଞ୍ଚସିଦ୍ଧାନ୍ତିକା' ଗ୍ରନ୍ଥର ସାର ସଙ୍କଳନ କରି ଉତ୍କଳରେ "ଭାସ୍ୱତୀ" ନାମକ ଗ୍ରନ୍ଥ ରଚନା କରିଥିଲେ । ବର୍ତ୍ତମାନ "ଭାସ୍ୱତୀ" ଗ୍ରନ୍ଥ ଅନୁଯାୟୀ ପଞ୍ଜିକା ଗଣନା ହେଉଅଛି । ଏହିପରି ଅନେକ ବିଚକ୍ଷଣ ପଣ୍ଡିତ ଓଡ଼ିଶାର ଗ୍ରହବିପ୍ର କୁଳରେ ଜନ୍ମଗ୍ରହଣ କରି ଅନେକ ଗ୍ରନ୍ଥ ରଚନା କରି ଯାଇଅଛନ୍ତି, କେତେକ ସ୍ୱଦେଶ ବିଦେଶରେ ପ୍ରକାଶିତ ହୋଇଅଛି । କେତେକ ଗ୍ରନ୍ଥର ସନ୍ଧାନ ପର୍ଯ୍ୟନ୍ତ ମିଳୁନାହିଁ ।

ଓଡ଼ିଶାର ପ୍ରାଚୀନକୀର୍ତ୍ତିମଧ୍ୟରେ ଗୋଟିଏ କୀର୍ତ୍ତିସ୍ଥାନ କୋଣାର୍କ ମନ୍ଦିର । ଗଙ୍ଗବଂଶୋଦ୍ଭବ ନରସିଂହ ଦେବ ୧୨୫୨ ଖ୍ରୀଃରେ

ଏହିସମସ୍ତ ଆଲୋଚନା କରିବାଦ୍ୱାରା ଜଣାପାଉଅଛି ଯେ, ଉତ୍କଳରେ ଗ୍ରହବିପ୍ରମାନେ ପୂର୍ବକାଳରୁ ବାସସ୍ଥାପନ କରି ରହି- ଥିଲେ । ବର୍ତ୍ତମାନ ମଧ୍ୟ ଓଡ଼ିଶାର ବହୁତ ସ୍ଥାନରେ ବାସସ୍ଥାପନ କରି ରହିଅଛନ୍ତି । କିନ୍ତୁ ଦୁଃଖର ବିଷୟ ଏତଦ୍ଦେଶର ଦକ୍ଷିଣାଂଶରେ ରୂପାନ୍ତର ଘଟିଅଛି ।

ଅନ୍ୟୁନ ତିନିଶତାଧିକ ବର୍ଷ ପୂର୍ବରୁ ଏନଗରର ଜ୍ୟୋତି- ର୍ବିଦମାନେ ଧନୀ, ମାନୀ, ଗୁଣିବ୍ୟକ୍ତି ଥିବାର ପ୍ରମାଣ ମିଳେ । ଏଠାରେ କେବଳ ଐତିହାସିକ ବିଷୟ ଉଲ୍ଲେଖକଲୁଁ, 'ଓଡ଼ିଶା ଇତିହାସ' ଏବଂ 'ବାଲେଶ୍ୱର' ନାମକ ପୁସ୍ତକରେ ଏନଗରର ଅନ୍ୟାନ୍ୟସ୍ଥାନ ବର୍ଣ୍ଣନାରେ ବଟେଶ୍ୱର ଗ୍ରାମର କଥା ଲେଖାଅଛି । "ବଟେଶ୍ୱର ଗ୍ରାମନିବାସୀ ଜନୈକ ଜ୍ୟୋତିଷ (ଗ୍ରହବିପ୍ର) ଦୁର୍ଗାପୂଜା ଓ କାଳୀପୂଜା ଆରମ୍ଭ କରିଥିଲେ । ଏହା ବାଲେଶ୍ୱର ମଧ୍ୟରେ ସର୍ବାପେକ୍ଷା ପୁରାତନ ପୂଜା । ଅଦ୍ୟାପି ତାଙ୍କ ବଂଶଧର- ମାନେ ପୂର୍ବସ୍ଥିତରେ ପୂଜା କରି ଆସୁଅଛନ୍ତି ।" ଉକ୍ତ ବଂଶଧର ଶ୍ରୀଯୁକ୍ତ କୃତ୍ତିବାସ ଗ୍ରହାଚାର୍ଯ୍ୟ ଜ୍ୟୋତିର୍ଭୂଷଣ ବର୍ତ୍ତମାନ ବାଲେଶ୍ୱର ରାଜବାଟୀର ଜ୍ୟୋତିଷ-ପଣ୍ଡିତ ଅଟନ୍ତି । ଏହାଙ୍କର ପୂର୍ବେ ମରହଟ୍ଟା ପ୍ରାପ୍ତ ଅନେକ ଦେବତ୍ତର, ବ୍ରହ୍ମତ୍ତର ଭୂସମ୍ପତ୍ତି ଥିଲା, କାଳକ୍ରମେ ଲୟପ୍ରାପ୍ତ ହୋଇ ବର୍ତ୍ତମାନ ଅବଶିଷ୍ଟ କେତେକାଂଶ ରହିଅଛି । ଏହିପରି ଅନ୍ୟ ନଗରର ପ୍ରତ୍ୟେକ ଗ୍ରହବିପ୍ରମାନଙ୍କର ଦେବତ୍ତର, ବ୍ରହ୍ମତ୍ତର ଇତ୍ୟାଦି ନିଦର୍ଶନ ମାତ୍ର ରହିଅଛି । ଏହା ପୂର୍ବପୁରୁଷମାନଙ୍କ କୀର୍ତ୍ତି ।

(ଅନ୍ୟ ଗ୍ରହବିପ୍ରଙ୍କ ସମ୍ବନ୍ଧରେ ମତାମତ ଓ ଅନେକ ବିଷୟ ସଂଗୃହୀତ ହୋଇଅଛି, ଅନ୍ୟବିଧ କଣ୍ଟେ ସ୍ୱତନ୍ତ୍ର ପୁସ୍ତିକାକାରରେ ପ୍ରକାଶିତ ହେବ ।)



ସମାପ୍ତ ।

# ବିଜ୍ଞାପନ ।

ଜ୍ୟୋତିର୍ବିଦମାନେ ଏକସମୟରେ ସାମାଜିକ ଉଚ୍ଚ ପ୍ରଭୃତ ହାର ସମାଜରେ ଶ୍ରେଷ୍ଠଆସନ ଲାଭକରତଃ "ଗ୍ରହବିପ୍ର ଦ୍ୱିଜଶ୍ରେଷ୍ଠ" ବୋଲି ଖ୍ୟାତ ହେଉଥିଲେ । ଦୁଃଖର ବିଷୟ ଅଧୁନା ସେହି ଜ୍ୟୋତିର୍ବିଦ୍ ସମ୍ପ୍ରଦାୟର ବଂଶଧରମାନେ ଶିକ୍ଷାର ଅଭାବରୁ ଆର୍ଥିକ ଦାରିଦ୍ର୍ୟ ଦ୍ୱାରା ପ୍ରପୀଡ଼ିତ ହୋଇ ପୂର୍ବଗୌରବ ବିସ୍ମରଣ ହୋଇଅଛନ୍ତି । ଉତ୍କଳରେ ଜ୍ୟୋତିର୍ବିଦ୍ ଗ୍ରହବିପ୍ର-ମାନଙ୍କର ନାମ, ବାସସ୍ଥାନ, ବଂଶାବଳୀ ଆଦି ଜାଣିବାର ଉପାୟ ନାହିଁ । ଅମ୍ଭମାନଙ୍କର ଚଳପ୍ରଚଳନ ଉତ୍ତରାଂଶରେ ଥିବାରୁ ଅନ୍ୟତ୍ର ବଂଶାବଳୀ ଅମ୍ଭମାନଙ୍କ ଅଗୋଚର । ବର୍ତ୍ତମାନ ପ୍ରଧାନ ଉଦ୍ଦେଶ୍ୟ ଏହିଯେ, ଉତ୍କଳୀୟ ଜ୍ୟୋତିର୍ବିଦ୍ ଗ୍ରହବିପ୍ର-ମାନଙ୍କର ବଂଶାବଳୀ ଏକତ୍ରରେ ପୁସ୍ତକାକାରରେ ପ୍ରକାଶିତ କରିବା । ଏତନ୍ନିମିତ୍ତ ପ୍ରତ୍ୟେକ କୁଳପଞ୍ଜୀ, ବଂଶାବଳୀ ସମ୍ବଳିତ "ଗ୍ରହବିପ୍ର କୁଳବିଗ୍ରହ" ସଙ୍କଳିତ ହେଉଅଛି । ଆଶାକରୁଁ ପ୍ରତ୍ୟେକ ଜ୍ୟୋତିର୍ବିଦମାନେ ବିଜ୍ଞାପିତ ହେବା ମାତ୍ରକେ ସ୍ୱ ସ୍ୱ ଗୋତ୍ର, ବଂଶାବଳୀ ଏବଂ ବିଖ୍ୟାତ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନୀ ଆଦି ଲେଖି ନିମ୍ନଲିଖିତ ଠିକଣାରେ ପଠାଇବେ । 'କୁଳବିଗ୍ରହ' ଯଥାଶୀଘ୍ର ପ୍ରକାଶିତ ହେବ ।

ଶ୍ରୀ ଗୀତାନାଥ ଆଚାର୍ଯ୍ୟ
ବେଙ୍ଗାମାରଡ଼ଙ୍ଗା, ବାଲେଶ୍ୱର ।

ଶ୍ରୀ କୃତ୍ତିବାସ ଜ୍ୟୋତିର୍ଭୂଷଣ
ବଟେଶ୍ୱର, ବାଲେଶ୍ୱର ।